**ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ**




*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
**ଇଂ ପ୍ରଭାତ କୁମାର ନନ୍ଦ**

**ସମ୍ପାଦିକା**
**ଅନସୂୟା ନନ୍ଦ**



**୬୭ ବର୍ଷ, ଅଷ୍ଟମ ସଂଖ୍ୟା**
**ମାର୍ଚ୍ଚ- ୨୦୧୮**

**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**

*ଯୋଗାଯୋଗ*
**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
*ଦୂରଭାଷ* **: ୯୮୬୧୦୬୪୮୯୧,**
**୯୭୭୭୩୨୬୫୬୩**

email :
nandaanasuya@hotmail.com
www:odisha publication.com

ଅନ୍ୟାନ୍ୟ ବିଭାଗର ଲେଖକ-- ରଶ୍ମି ସାହୁ, କୁମୁଦଲତା ମହାନ୍ତି, ଡ. ଶୁଭେଂନ୍ଦ୍ର ମୋହନ ଶ୍ରୀଚଂନ୍ଦନ ସିଂ ।

ଏ ମାସ ପ୍ରଚ୍ଛଦରେ 'ସଠିକ୍ ଉତ୍ତର' ବିଷୟରୁ ଚିତ୍ର ପ୍ରଦତ୍ତ ।

## ଗଳ୍ପ ଓ ଜୀବନୀ



## କବିତା



## ଜ୍ଞାନବିଜ୍ଞାନ



## ମନୋରଞ୍ଜନ



## ଆମ ଚିଠି ମୁଣିରୁ

**ଶୈଳଙ୍ଗ, କେନ୍ଦୁଝରରୁ ସ୍ୱର୍ଣ୍ଣପ୍ରଭା ପଟ୍ଟନାୟକ-** ବାସ୍ତବରେ ୬୭ ବର୍ଷ ଧରି ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ ପାଇଁ 'ସଂସାର'ର ଅବଦାନ ଅତୁଳନୀୟ । କହିବା ବାହୁଲ୍ୟ ଯେ– ଅନ୍ୟ ଶିଶୁ ପତ୍ରିକା ତୁଳନାରେ ଏହି ପତ୍ରିକା ପାଠକପାଠିକାମାନଙ୍କୁ ଅଧିକରୁ ଅଧିକତର ପ୍ରେରଣା ଓ ଉତ୍ସାହ ଦେଇପାରିଛି । ଏଥିପାଇଁ ସଂସାର ପରିବାରକୁ ଶତଶତ ଧନ୍ୟବାଦ ।

**କେଟଲା, କୋରାପୁଟରୁ ପାର୍ବତୀ-** ଜାନୁୟାରୀ ମାସର ସଂଖ୍ୟାରେ 'ଭାବି ଦେଖନ୍ତୁ' ସ୍ତମ୍ଭର ଉପସ୍ଥାପନା ଶୈଳୀ ଚମତ୍କାର ହୋଇଛି । ସେଥିପାଇଁ ଆପଣଙ୍କୁ ଧନ୍ୟବାଦ ।

**ଓଡ଼ଗାଁ ନୟାଗଡ଼ରୁ ରାଜକିଶୋର ସାହୁ-** ଏ ମାସର ଲେଖନୀର ପାଠଶାଳା ଆକର୍ଷଣୀୟ ହେବା ସହିତ ଛାତ୍ରଛାତ୍ରୀ ତଥା ଶିକ୍ଷକ/ଶିକ୍ଷୟିତ୍ରୀଙ୍କ ଦ୍ୱାରା ଖୁବ୍ ଆଦୃତ ହେଉଛି । ସଂସାର ଦୀର୍ଘଜୀବୀ ହେଉ– ଏତିକି ପ୍ରାର୍ଥନା ।

## ❀❀ ଅଭିନନ୍ଦନ ❀❀

ଆମର ପରିଚିତ ଲେଖକ **ଶ୍ରୀ ରବୀନ୍ଦ୍ରନାଥ ମାଝୀ, ଶ୍ରୀ ନଟବର ସାହୁ, ଡ. ରବିନାରାୟଣ ସାହୁଙ୍କୁ** ଶିଶୁ ସାହିତ୍ୟ ଲେଖକ ସମ୍ମେଳନ ତରଫରୁ ସେମାନଙ୍କର ଉଲ୍ଲେଖନୀୟ ସାହିତ୍ୟକୃତି ପାଇଁ ସମ୍ମାନିତ କରାଯାଇଛି ଏବଂ **ଶ୍ରୀମତୀ କୁମୁଦଲତା ମହାନ୍ତି** ଶ୍ରୀଶ୍ରୀ ନୀଳକଣ୍ଠେଶ୍ୱର ସାହିତ୍ୟ ସଂସଦ ଏବଂ ଉତ୍କଳ ସାହିତ୍ୟ କଳା ପରିଷଦ ତରଫରୁ ସମ୍ମାନିତ ହୋଇଛନ୍ତି ।

ଓଡ଼ିଶା ଲେଖିକା ସଂସଦ ତରଫରୁ **ଶ୍ରୀମତୀ ମହିଜା ଦଳବେହେରା** ତାଙ୍କର ସାହିତ୍ୟ କୃତି ପାଇଁ 'ରାମକୃଷ୍ଣ ନନ୍ଦ ଶିଶୁ ସାହିତ୍ୟ ସମ୍ମାନ'ରେ ସମ୍ମାନିତ ହୋଇଛନ୍ତି ।

ଏମାନଙ୍କର କୃତିର ଗୌରବରେ 'ସଂସାର ପରିବାର' ନିଜକୁ ଗୌରବାନ୍ୱିତ ମନେକରିବା ସହିତ ସେମାନଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରୁଛି ।

**--ସଂସାର 'ପରିବାର'**

---


**୧୯୫୬ ମସିହାର ରେଜିଷ୍ଟ୍ରେସନ ଅଫ୍ ନିଉଜ୍ ପେପରସ୍ (ସେଣ୍ଟ୍ରାଲ) ନିୟମ ଅନୁସାରେ 'ସଂସାର'(ମାସିକ)ର ବିବରଣୀ**

**ଫର୍ମ-୧ ଅଷ୍ଟମ ଧାରା**

ପ୍ରକାଶନ ସ୍ଥାନ - କଟକ
ପ୍ରକାଶ ସମୟ - ପ୍ରତିମାସ ୧ ତାରିଖ
ଜାତୀୟତା - ଭାରତୀୟ (ଓଡ଼ିଆ)
ଠିକଣା - ସଂସାର ପ୍ରେସ, ତଳତେଲେଙ୍ଗା ବଜାର, କଟକ-୭୫୩୦୦୯
ପ୍ରକାଶକଙ୍କ ନାମ- ଅନସୂୟା ନନ୍ଦ
ଜାତୀୟତା - ଭାରତୀୟ (ଓଡ଼ିଆ)
ଠିକଣା - ସଂସାର ପ୍ରେସ, ତଳତେଲେଙ୍ଗା ବଜାର, କଟକ-୭୫୩୦୦୯
ସଂପାଦକଙ୍କ ନାମ- ଅନସୂୟା ନନ୍ଦ
ଜାତୀୟତା - ଭାରତୀୟ (ଓଡ଼ିଆ)
ଠିକଣା - ସଂସାର ପ୍ରେସ, ତଳତେଲେଙ୍ଗା ବଜାର, କଟକ-୭୫୩୦୦୯
ସ୍ୱତ୍ୱାଧିକାରୀଙ୍କ ନାମ ଓ ଠିକଣା - ଅନସୂୟା ନନ୍ଦ ସଂସାର ପ୍ରେସ, ତଳତେଲେଙ୍ଗା ବଜାର, କଟକ-୭୫୩୦୦୯

ଆମ୍ଭେ ଅନସୂୟା ନନ୍ଦ ଏତଦ୍ୱାରା ଘୋଷଣା କରୁଅଛୁ କି ଉପରୋକ୍ତ ବିବରଣୀମାନ ସତ୍ୟ ବୋଲି ଆମ୍ଭର ବିଶ୍ୱାସ ଏବଂ ହୃଦ୍‌ବୋଧ ହୋଇଅଛି ।

**ସ୍ୱା- ଅନସୂୟା ନନ୍ଦ**
୧.୩.୨୦୧୫ ପ୍ରକାଶକ, ମାସିକ 'ସଂସାର'

# ଗାଈର ସହରବୁଲା

## ଡକ୍ଟର କୃତ୍ତିବାସ ନାୟକ

ଥରେ ଗୋଟିଏ ଗାଆଁର ଗାଈଗୋଠରୁ ଗାଈଟିଏ ବାଟ ଭୁଲିଗଲା । ଭଲ କଅଁଳିଆ ଘାସ ଚରୁଚରୁ ସେ ଜାଣିପାରିଲା ନାହିଁ ଯେ ଅନ୍ୟ ଗାଈଗୋରୁମାନେ କେତେବେଳେ ଘରମୁହାଁ ହେଇ ଚାଲିଗଲେଣି । ଏଣକିତେଣିକି ଚାହିଁ ଯେତେ ହମାଳିଲେ ବି କେହି ତା ଡାକ ଶୁଣିଲେ ନାହିଁ । ଏଣେ ଅନ୍ଧାର ମାଡ଼ିଆସୁଛି, ସେ ତରବର ହେଇ ଧାଇଁଲା । କିନ୍ତୁ ସେ ଭୁଲ୍ ବାଟରେ ଯାଉଥିବାରୁ ତାକୁ ଭାରି ଡର ମାଡୁଥାଏ; ତଥାପି ସେ ସାହସ କରି ସାରା ରାତି ଚାଲି ଚାଲି ବଣକୁ ପାର ହେଇଗଲା ।

ସକାଳ ସକାଳୁ ସେ ଦେଖିବାକୁ ପାଇଲା– ବହୁତ ବଡ଼ ବଡ଼ କୋଠାଘର । କଳା କଚ୍‌ମଚ୍ ଲମ୍ବା ପିଚୁରାସ୍ତା । ଧାଡ଼ି ଧାଡ଼ି ହେଇ ଗାଡ଼ି ଚାଲିଛି । କୁଆଡ଼େ ଯିବ, କ'ଣ କେମିତି ଖାଇବ; ରହିବ କେଉଁଠି ? ଏହିଭଳି ଚିନ୍ତା କରି ସେ ଏପଟସେପଟ ହେଉଥାଏ । କିଛି ସମୟ ପରେ ସେ ଦେଖିବାକୁ ପାଇଲା– ପଲେ ଗାଈ ଦଳବାନ୍ଧି ବେଶ୍ ମଜାରେ ପିଚୁରାସ୍ତା ଉପରେ ଶୋଇଛନ୍ତି । ସେମାନଙ୍କୁ ଦେଖି ଗାଈଟି ତାଙ୍କ ପାଖକୁ ଗଲା । ଭାବିଲା– ଏମାନେ ତ ଆମରି ଜାତିର, ସେମାନଙ୍କୁ ନିଜ ଦୁଃଖ, ଅସୁବିଧା କଥା କହିଲେ ସେମାନେ ମୋତେ ଗାଆଁକୁ ଫେରିବା ବାଟ କହିଦେଇ ପାରିବେ ।



ବାହାରୁ ଆସିଥିବା ନୂଆ ଗାଈକୁ ଦେଖି ଗୋଟାଏ ନାଲି ଗାଈ ଉଠିପଡ଼ି ତାକୁ ମଟ୍‌ମଟ୍ କରି ଚାହିଁଲା । ନିଜର ଗୋଜିଆ ସିଙ୍ଗକୁ ଦେଖାଇ ଫଁ ଫଁ ଶବ୍ଦ କରି ତାକୁ ଭୁସିଦେବାକୁ ଧାଇଁଆସିଲା । ବିଚରା ଗାଈଟି ଡରିଯାଇ ଟିକେ ପଛକୁ ଘୁଞ୍ଚିଗଲା । ମନଦୁଃଖ କରି ସେ ସେଇଠି ଠିଆ ହୋଇ ରହିଲା । କିଛି ସମୟ ପରେ ଗୋଟିଏ ବଡ଼ ବାଛୁରୀ ତା'ପାଖକୁ ଆସି ପଚାରିଲା, "ତୁ କିଏ ? କେଉଁଠୁ ଆସିଛୁ ? ତୋ ସାଙ୍ଗସାଥୀମାନେ କେଉଁଠି ଅଛନ୍ତି ? ତୋର ତ ବାଛୁରୀ ଥିବେ ? ସେମାନେ କୁଆଡ଼େ ଗଲେ ? ତା'କୁ ସାଙ୍ଗରେ ଆଣିଥିଲେ ଆମେ ତା' ସହିତ ସାଙ୍ଗ ହେଇ ଖେଳିଆ'ନ୍ତୁ ।"

ଛୋଟ ବାଛୁରୀ କଥା ଶୁଣି ଗାଈର ମନ ଖୁସି ହେଇଗଲା । ସେ ମନ ଖୋଲି ସବୁ କଥା କହିଲା– ଠିକ୍ ତା'ଭଳି ଗୋଟାଏ ଛୋଟ ବାଛୁରୀ ଥିଲା, ସେ ମଧ୍ୟ ଗାଈଗୋଠରେ ମିଶି ଗାଆଁକୁ ଚାଲିଯାଇଛି ।

ଗାଈର କଥା ଶୁଣି ବାଛୁରୀର ମନ ଦୁଃଖ ହେଇଗଲା । ସେ ନିଶ୍ଚୟ ତା' ମାଆକୁ ଖୋଜି ହମାଳି ହମାଳି ଥକିଯାଇଥିବ । ଏଣେ ଛୁଆକୁ ନ ପାଇ ଗାଈର ମନ ବହୁତ ଦୁଃଖ ହେଉଥିବ । ଏକଥା ଭାବି ସେ ଗାଈକୁ କହିଲା, "ମାଉସୀ ! ତମେ ବହୁତ ଦୂରକୁ ଚାଲିଆସିଛ । ଗାଆଁକୁ ତ ଆଉ ଫେରିପାରିବ ନାହିଁ । ଆସ ଆମ ସାଙ୍ଗରେ ମିଶି ଏଇ ସହରରେ ରହିବ । ମୋ ମା' ଭଉଣୀମାନଙ୍କ ସହିତ ମିଶି ବଜାରରେ ବୁଲି ବୁଲି ଖାଇବ । ପକ୍କା ଘର ପାଖରେ ଶୋଇବ । ମୁଁ ସବୁକଥା ମୋ' ମାଆକୁ

ବୁଝାଇଦେବି । ତମେ ମୋତେ ମନଦୁଃଖ କରନା । ହଁ ଟିକେ ସାବଧାନ ଥିବ, କେତେବେଳେ କେଉଁଠୁ ଗାଡ଼ି ଆସି ତମ ଦେହରେ ବାଡ଼େଇହେଇଯିବ ।"

ବାଛୁରୀର ମଧୁର କଥା ଗାଈକୁ ଭଲଲାଗିଲା । ସେ ତା' ସାଙ୍ଗରେ ଗାଈମାନଙ୍କ ପାଖକୁ ଗଲା । ଅନ୍ୟ ଗାଈମାନେ ଉଠି ଅଳସ ଭାଙ୍ଗି ରାସ୍ତା ଉପରେ ହଗାମୁତା କଲେ । ବାଛୁରୀର ମାଆ ଆସି ଗାଆଁ ଗାଈର କଥା ବାଛୁରୀଠାରୁ ଶୁଣି ମନଦୁଃଖ କଲା । ତା'ପରେ ସେ ତାକୁ ଚାଟିଦେଇ ଆଦରରେ ଟିକେ ଗେଲ କରିଦେଲା ।



କିଛି ସମୟପରେ ଗାଈବାଛୁରୀମାନେ ଯାଇ ଅଳିଆଗଦା ପାଖରେ ପହଞ୍ଚିଲେ । ସେଇଠି ଗଦା ହୋଇଥିବା ଅଳିଆ ଭିତରେ ଜରିବନ୍ଧା ବଳକା ଅଇଁଠା ଖାଦ୍ୟକୁ ଖୋଜି ଚାଟି ଚାଟି ଖାଇଲେ । କୁକୁରମାନଙ୍କ ସହିତ ଲଢ଼େଇ କରି ତାଙ୍କଠାରୁ ଛଡ଼େଇ ଆବର୍ଜନା ଖାଇଲେ । ଏଣେତେଣେ ପଡ଼ିଥିବା କାଗଜ, ଅଇଁଠାପତର ଖାଇଲେ ।

ଗାଆଁରୁ ଆସିଥିବା ଗାଈ ଦୂରରେ ଠିଆ ହୋଇ ତାଙ୍କୁ ଦେଖୁଥିଲା । ସେଇପଟ ଦେଇ ଗୋଟେ ଷଣ୍ଢ ଯାଉଥିଲା । ତାର ଚେହେରାଟା ବଡ଼ ବିକୃତ ଦିଶୁଥିଲା । ଗୋଟିଏ ପାଖ ପେଟଟା ଫୁଲିଯାଇଥାଏ । ଶିଙ୍ଗଗୁଡ଼ାକ ଭାଙ୍ଗିଯାଇଥାଏ । ଦେହଟାଯାକ ଦାଗ । ଏଣେ ଛୋଟେଇ ଛୋଟେଇ ଚାଲୁଥାଏ । ସେ ମଧ୍ୟ ଆସି ସେଇ ମଇଳାଗଦାରୁ ଖୋଜି ଖୋଜି ଅଇଁଠା ଖାଇବାରେ ଲାଗିଲା ।

ବାଛୁରୀ ଆସି ଗାଈକୁ କହିଲା, "ମାଉସୀ ! ତମକୁ ତ ଭୋକ ଲାଗୁଥିବ । ସେଇ ଅଳିଆଗଦାକୁ ଯାଇ କିଛି ଖାଇନିଅ । ଆମ ସହରର ଗାଈଗୋରୁମାନେ ଏମିତି ବୁଲି ବୁଲି ଖାଆନ୍ତି । ବେଳେବେଳେ ଭାରି ସୁଆଦିଆ ମିଠା ମିଠା, ଲୁଣି ଲୁଣି ଖାଦ୍ୟ ବି ଅଳିଆରୁ ମିଳିଯାଏ । ସହରୀବାବୁମାନେ ମାଛ, ମାଉଁସ କଣ୍ଟା ଆଉ ହାଡ଼ ବି ଜରିରେ ବାନ୍ଧି ପକେଇଥାନ୍ତି । ତାକୁ ସବୁ କୁକୁର ମାଡ଼ଗୋଳ ଲାଗି ଖାଇଯାଆନ୍ତି । କେତେଜଣ ଗାଈ ସୁଆଦିଆ ଜରି ଲାଗିଥିବା ଖାଦ୍ୟକୁ ଚାଟୁ ଚାଟୁ ଖାଇଦିଅନ୍ତି ।

ବେଳେବେଳେ ଲୁଣି ଲାଗୁଥିବା ଖାଦ୍ୟକୁ ଖାଉ ଖାଉ ଗାଈଗୋରୁମାନେ ମାଂସର ହାଡ଼, ମାଛର କଣ୍ଟାକୁ ମଧ୍ୟ ପାଟିରେ ପୂରାଇ ଚୋବେଇପକାନ୍ତି । ତମେ ତ ଜାଣିଥିବ ଆମ ଜାତିର ପଶୁମାନେ ଲୁଣ ଖାଇବାକୁ କେମିତି ବିକଳ ହୁଅନ୍ତି । ଲୁଣିଆ ଖାଦ୍ୟ ଆମକୁ ଭାରି ସୁଆଦିଆ ଲାଗେ । ଥରେ ଯାହା ପାଟିରେ ଲୁଣର ସୁଆଦ ଲାଗିଛି, ତାକୁ କଅଁଳ ଘାସ କି ଗଛର ପତର ଆଉ ଭଲ ଲାଗେନାହିଁ ।"

ବାଛୁରୀର କଥା ଶୁଣି ଗାଈ ବୁଝିଗଲା– ସହରରେ ଥିବା ଗାଈଗୋରୁମାନେ ଗାଆଁ ଗାଈଗୋରୁଙ୍କଠାରୁ ଭିନ୍ନ । ଏମାନଙ୍କ ଖାଇବା, ଶୋଇବା, ରହିବା ମଧ୍ୟ ଭିନ୍ନ । ତା'ମନରେ ପୁଣି ପ୍ରଶ୍ନ ଉଠିଲା– ଅଧିକାଂଶ ଗାଈଗୋରୁ, ଷଣ୍ଢମାନେ ଛୋଟେଇ ଛୋଟେଇ ଚାଲୁଛନ୍ତି କାହିଁକି ? ବାଛୁରୀଟି ଗାଈର ମନକଥା ଜାଣିପାରି କହିଲା– ହେଇ ଦେଖ, ଏ ଗାଈର ଗୋଡ଼ର ଖୁରାଗୁଡ଼ିକ କେମିତି ଲମ୍ବିଯାଇଛି । ଯୋତା ପିନ୍ଧିବା ପରି ଦିଶୁଛି ନା ! ଏମିତି କାହିଁକି ହେଇଛି, ଜାଣିଛ ମାଉସୀ ? ସେମାନେ ପିଚୁରାସ୍ତା,

ପକ୍କାରାସ୍ତାରେ ଚାଲନ୍ତି । ତାଙ୍କର ଖୁରା ତ ବିଲବାଡ଼ିରେ ପାଣି କାଦୁଅରେ ବୁଲିବା ପାଇଁ ତିଆରି ହେଇଛି ନା । ପିଚୁରାସ୍ତା, ପକ୍କାସଡ଼କରେ ତାଙ୍କର ଖୁରା ଚେପେଟା ହେଇ ଲମ୍ବିଯାଉଛି । ସେମାନେ ଠିକ୍ ଭାବରେ ଚାଲିପାରୁନାହାନ୍ତି ।

ହେଇ ଦେଖ, ସେ ବୁଢ଼ୀଗାଈର ଅବସ୍ଥା । ତା'ର ଖୁରା ଫାଟି ରକ୍ତ ବାହାରୁଛି । କେହି ତା' କଥା ବୁଝିପାରୁ ନାହାନ୍ତି । ଗାଈ ମାଲିକ କିଏ କେଉଁଠି ରହୁଛି, ତା'ର ହିସାବ ନାହିଁ । ତାକୁ ଚିକିତ୍ସା କରିବାକୁ କେହି ଉଚିତ ମନେକରନ୍ତି ନାହିଁ । ଆଉ କେତେଦିନ ପରେ ତା' ଗୋଡ଼ରେ ଘାଆ ବଢ଼ିଯିବ । ପୋକମାଛି କାମୁଡ଼ି କାମୁଡ଼ି ତାକୁ ମାରିଦେବେ ।"

ବାଛୁରୀ କଥା ଶୁଣିଲା ବେଳେ ଗାଈ ଭାବୁଥିଲା– ଆମ ଖାଉନ୍ଦ ତ ଆମ ଖାଇବା, ପିଇବା, ଚିକିତ୍ସା ବ୍ୟବସ୍ଥା କରନ୍ତି । ଆମେ ଘରକୁ ନ ଫେରିଲେ ସେ ଉପବାସ ରହି ଆମକୁ ଖୋଜି ଆଣିଥାନ୍ତି । ଆମକୁ ଥଣ୍ଡା ଧରିଲେ ଆମ ସିଙ୍ଗ ଆଉ ଖୁରାରେ ତେଲ ଲଗାଇଦିଅନ୍ତି; କିନ୍ତୁ ସହରର ଗାଈଗୋରୁମାନେ ବଡ଼ ଦୁଃଖରେ ଅଛନ୍ତି । ସେ ବାଛୁରୀକୁ ପଚାରିଲା, "ଆଚ୍ଛା ! ଏଠାକାର ଷଣ୍ଢମାନେ ଏମିତି ବିକୃତ ଦିଶୁଛନ୍ତି କାହିଁକି ?"

– "ଦିଶିବେ ନାହିଁ ? ତାଙ୍କ ପେଟରେ ପରା ଜରି ଭର୍ତ୍ତି ହୋଇ ରହିଛି ! ଖାଦ୍ୟ ସହିତ ସେମାନେ ଜରିକୁ ଖାଇଦେଇ ହଜମ କରିପାରନ୍ତି ନାହିଁ । ଥରେ ଗୋଟିଏ ଷଣ୍ଢ ପେଟରୁ ଚାଳିଶି କିଲୋ ଜରି ବାହାରିଥିଲା । ସେଇ ଜରି ତାଙ୍କ ପେଟରେ ହଜମ ନ ହୋଇ ଗୋଟିଏ ପାଖରେ ଜମା ହୋଇ ରହେ । ସେଥିପାଇଁ ଷଣ୍ଢମାନଙ୍କ ପେଟଫୁଲି ଛତା ପରି ଦିଶୁଛି । ଆଉ କେତେଦିନ ପରେ ସେମାନେ ବେମାର ହୋଇ ପଡ଼ି ପଡ଼ି ମରିଯିବେ । ବିଚରା ଷଣ୍ଢ, ଗାଈଗୋରୁମାନଙ୍କର ଭାଗ୍ୟ ବହୁତ ଖରାପ । ତାଙ୍କ ସହିତ ଆମ ଭଳି ବାଛୁରୀମାନେ ମଧ୍ୟ ବଡ଼ ଦୁଃଖୀ । କଅଁଳ ପତର କି ସବୁଜ ଘାସ ତ ଆମ ପାଇଁ ସାତ ସପନ ।"

ବାଛୁରୀଟି ଏକଥା କହିଲାବେଳେ ତା' ଆଖିରୁ ଲୁହ ବହିଯାଉଥିଲା । ସେ ପୁଣି କହିଲା, "ମାଉସୀ ! ତମେ କାଲିଠାରୁ କିଛି ଖିଆପିଆ କରିନ । ଭୋକ ଲାଗୁଥିବ । ଚାଲ ସେ ଅଳିଆଗଦାରୁ କ'ଣ ଟିକେ ଖୋଜି ଖାଇଦେବ । ଏବେଠୁ ଅଭ୍ୟାସ ନ କଲେ ଚଳିବ କେମିତି ?"

ଗାଇଟି ସବୁକଥା ଶୁଣିସାରି ବାଛୁରୀକୁ କହିଲା, "ନାଇଁରେ ପୁଅ ! ମୋର ଅଭ୍ୟାସ କରିବା ଦରକାର ନାହିଁ କି ଏ ସହରରେ ରହିବାର ନାହିଁ । ଯେଉଁ ବାଟେ ବାଟେ ମୁଁ ଆସିଥିଲି, ସେଇ ଜଙ୍ଗଲ ବାଟ ଦେଇ ମୁଁ ମୋ ଗାଆଁକୁ ଫେରିଯିବି । ବାଟରେ ବାଘ ହାବୁଡ଼ରେ ପଡ଼ିବି ପଛେ ଏ ସହରରେ ଆଉ ମୁହୂର୍ତ୍ତେ ରହିବି ନାହିଁ । ମୁଁ ଚାଲିଲି ।"



ଏତିକି କହି ଗାଈଟି ଲାଙ୍ଗୁଳ ଟେକି ନିଜର କାନ ଡରାଟି ଧାଇଁଲା ବଣ ଆଡ଼କୁ । ଶେଷରେ ଖୋଜି ଖୋଜି ତା' ପରିଚିତ ଗାଈମାନଙ୍କୁ ପାଇଗଲା । ସହରରେ ଥିବା ଗାଈମାନଙ୍କ ଦୁଃଖ କଥା କହି ପିଲାମାନଙ୍କୁ କହିଲା– ସତରେ ଆମେ କେତେ ସୁଖରେ ଅଛୁ ! କେବେ ବି ସହରକୁ ଯିବା ଦରକାର ନାହିଁ ।

'ଅରୁଣ ତରୁଣ' ଭି.ଆଇ.ଏମ୍-୫୫, ଶୈଳଶ୍ରୀ ବିହାର, ଭୁବନେଶ୍ୱର-୭୫୧୦୨୧



# ବଞ୍ଚିବା ଜୀବନ ଧରି

ଶ୍ରୀ ଚିତ୍ତରଂଜନ ପଟ୍ଟନାୟକ

ଚେହେରା ଯେମିତି ଗୁଣ ବି ସେମିତି
ଚକଚକିଆ ତା' ଦିହ
ସବୁରି ଘରରେ ଦେଖାଦେଇ ସିଏ
ପାଉଥାଏ କୋଟି ସ୍ନିହ ।
କିଏ ତାକୁ ଡାକେ ଆଇନା ଦର୍ପଣ
ଆରିଶି କିଏ ବି ଡାକେ,
ନିଗୂଢ଼ ସଂପର୍କ ଗଢ଼ିତୋଳି ଦେଇ
ରହିଚି ଆମରି ପାଖେ ।
ସ୍ୱଚ୍ଛକାଚ କିଣି ଶିଳିପୀ ଗଢ଼ିଛି
ଚାରି ଚଉରସ କରି,
କାଠ ପ୍ଲାଷ୍ଟିକରେ ବାନ୍ଧିଛି ସରାଗେ
ଯତନେ ହାତରେ ଧରି ।
କିଣା-ବିକା ଚାଲେ ଗାଁ ସହରରେ
ଗରାଖଙ୍କୁ କରି ବଶ,
ଚେହେରାକୁ ତାର ନିରେଖି ଚାହିଁଲେ
ଓଠୁ ଛୁଟୁଥାଏ ହସ ।
ବୁଢ଼ାବୁଢ଼ୀ, ପିଲା, ଯୁବକଯୁବତୀ
ହାତରେ ନିଇତି ଧରି,
ନିଜ ରୂପ ଦେଖି ସଜାଡ଼ନ୍ତି କେଶ
ଏପଟସେପଟ କରି ।
କଦବା କେମିତି ଲାଗିଗଲେ ଧୂଳି
ଅସନା ଦିଶଇ ମୁଖ,
ପୋଛି-ପାଛି ଦେଲେ ମନଖୋଲି ହସେ
ପାଏ ସେ ସରଗ ସୁଖ ।
ନିଜ ପ୍ରତିବିମ୍ବ ଆମେ ନିଜେ ଦେଖୁ
ପାଖେ ରହେ ଛାଇ ପରି,
ସେବା କରିଅଛି ମଣିଷ ଭାଇର
ଆନନ୍ଦ ଉଲ୍ଲାସ ଭରି ।
ଯାନି ଯଉତୁକେ ଲୋଡ଼ା ସେ ହୋଇଛି
ପେଡ଼ିରେ ସାଇତା ହୁଏ,
ପର-ଆପଣାର ଭେଦଭାବ ଭୁଲି
ଅସରନ୍ତି ହସ ଥୁଏ ।
ଅନ୍ତରେ ତାହାର ଖେଳୁଛି ସତତ
ଅନାବିଳ ପ୍ରେମଧାରା,
ସ୍ୱଚ୍ଛ ମନ ଧରି ରହିଅଛି ଜିଇ
ହସାଇ ମରତ ସାରା ।
ଦେବ-ଦେବୀ ପୀଠ ମଣ୍ଡନ କରଇ
ପୂଜାପାଠେ ଲୋଡ଼ା ହୋଇ,
ଅନ୍ତରର ଭାବ ବିକାଶଇ ତାର
ସବୁରି ପରାଣ ମୋହି ।
ମନର ମଇଳା ପୋଛିପାଛି ଦେଇ
ହେବା ଦରପଣ ପରି,
ସେବା କରି ଆମେ ଅରଜିବା ପୁଣ୍ୟ
'ବଞ୍ଚିବା ଜୀବନ ଧରି' ।

ନିଗମ ନିବାସ, ଘୁଟୁକେଶରୀ, ନରଣପୁର, କେନ୍ଦୁଝର-୭୫୮୦୧୪

# ସରଗଠାରୁ ସୁନ୍ଦର

ଶ୍ରୀ କାଳିକିଙ୍କର

ସରଗର ଶିଶୁମାନେ ସେଦିନ ସରଗରୁ କିଛି ତଳକୁ ଓହ୍ଲାଇଆସିଲେ । ସରଗର ତଳେ ଆକାଶ; କିନ୍ତୁ ଆକାଶ ସରଗ ଭଳି ସୁନ୍ଦର ନୁହେଁ । ଆକାଶର କେଉଁଠି ମେଘ ତ କେଉଁଠି ଧୂଳିଧୂଆଁ, ଅଜସ୍ର ଜଳକଣା । ଅନେକ ରଂଗ ଏହି ଆକାଶରେ ଦେଖିବାକୁ ମିଳେ । ତେବେ ଏ ଆକାଶରେ ସରଗ ଭଳି ସ୍ୱଚ୍ଛନ୍ଦରେ ବୁଲିବା ସମ୍ଭବ ହୁଏନାହିଁ । ବିଶାଳ ମେଘଖଣ୍ଡ ବାଟରେ ଠିଆହୁଅନ୍ତି ।

ବେଳେବେଳେ ଏହି ମେଘଖଣ୍ଡ ଏମିତି ପରସ୍ପର ସହ ଭିଡ଼ାଭିଡି କରନ୍ତି ଯେ ସେଥିରୁ ଭୟଙ୍କର ଶବ୍ଦ ହୁଏ ଓ ନିଆଁ ବାହାରେ । ସରଗର ଶିଶୁମାନେ ଏହା ଦେଖି ଭୟରେ ପଳାଇଯାଆନ୍ତି । ତେବେ ସେମାନେ ଶିଶୁ । ଖେଳିବା ବୁଲିବା ତାଙ୍କର ଇଚ୍ଛା । କେବଳ ସରଗ ତାଙ୍କୁ ଭଲଲାଗୁନାହିଁ ।



କ'ଣ ସରଗ, ଆକାଶ ଛଡ଼ା ଆଉ କେଉଁ ସ୍ଥାନ ନାହିଁ ଯେ ସେମାନେ ଯାଇ ସେଠାରେ ଖେଳନ୍ତେ । ତେବେ ତଳକୁ ଗଲେ ତ ଆକାଶ । ସେଠି ଖାଲି ଧୂଳି, ଧୂଆଁ ଓ ମେଘ କଳି ।

ବିଚାରକଲେ ଯେ ନାରଦ ମଉସାଙ୍କୁ ପଚାରିଲେ ସେ ନିଶ୍ଚୟ ଠିକ୍ ସ୍ଥାନ ବିଷୟରେ ଖବର ଦେଇପାରିବେ । ସେ ତ ସବୁବେଳେ ବୁଲନ୍ତି । ସରଗରେ ସେ ଯେତିକି ସମୟ ରହନ୍ତି, ତା'ଠାରୁ ଅଧିକ ସମୟ ବାହାରେ ରହନ୍ତି ।

ଶିଶୁମାନେ ଯାଇ ନାରଦ ମଉସାଙ୍କ ଆଶ୍ରମରେ ପହଞ୍ଚିଲେ । ନାରଦ ମଧ୍ୟ ବାହାରକୁ ଯିବାକୁ ପ୍ରସ୍ତୁତ ହେଉଥିଲେ । ସରଗର ଶିଶୁମାନଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲେ । ଏମାନେ ମୋ ପାଖକୁ ଏ ବେଳରେ କାହିଁକି ଆସିଛନ୍ତି ? କ'ଣ କିଛି ଅସୁବିଧା ହେଲା କି ?

ପଚାରିବାରୁ ସରଗର ଶିଶୁମାନେ କହିଲେ, "ମଉସା ! ଆପଣ ତ ସବୁ ସ୍ଥାନ ଦେଖିଥିବେ । ସରଗଠାରୁ କ'ଣ ସୁନ୍ଦର ସ୍ଥାନ ଏ ବ୍ରହ୍ମାଣ୍ଡରେ ନାହିଁ ? ଆମେ ସେଦିନ ସରଗର ତଳକୁ ଗଲୁ । ସେଠାରେ ଆକାଶ ଥିଲା; କିନ୍ତୁ ସେ ଆକାଶ ସରଗ ଭଳି ଭଲ ନୁହେଁ । ସେଠାରେ ଧୂଳି, ଧୂଆଁ, ମେଘ ଆଦି ଅଛନ୍ତି; କିନ୍ତୁ ସେ ମେଘମାନେ ଏମିତି କଳି କରନ୍ତି ଯେ କାନ ଯେମିତି ଫାଟିଯିବ । ଆଉ କି ନିଆଁ ! ଆମେ ଭୟରେ ପଳେଇ-ଆସିଲୁ । ତଳକୁ ଆଉ କେବେ ଯିବୁନି । କେତେ ଭୟଙ୍କର ସେ ରାଜ୍ୟ !"

ନାରଦ ହସିଲେ, "ପିଲାମାନେ, ତୁମେ ସରଗଠାରୁ ସୁନ୍ଦର ସ୍ଥାନ

ଖୋଜୁଛ ଯଦି ଆଉ ଥରେ ସେ ଆକାଶ ଛାଡ଼ି ଆଉ ଟିକେ ତଳକୁ ଯାଅ । ଯଦି ଯାଇପାରିବ, ତେବେ ତୁମେ ସରଗଠାରୁ ସୁନ୍ଦର ସ୍ଥାନ ମଧ୍ୟ ଦେଖିପାରିବ । ମୁଁ ସବୁଦିନ ସେହି ସୁନ୍ଦର ଅଞ୍ଚଳକୁ ଯାଇ ସମୟ ଅତିବାହିତ କରେ ।"

– "ସତରେ ମଉସା ?" ପିଲାମାନେ ଆଗ୍ରହରେ ପଚାରିଲେ । ସରଗଠାରୁ କ'ଣ ସତରେ କେଉଁ ସ୍ଥାନ ଅଛି, ଯାହା ସରଗଠାରୁ ସୁନ୍ଦର ?"

– 'ଅବଶ୍ୟ ।' ଏତିକି କହି ନାରଦ 'ନାରାୟଣ ନାରାୟଣ' ସ୍ୱର ତୋଳି ଅନ୍ତର୍ଦ୍ଧାନ ହୋଇଗଲେ ।

ସରଗର ଶିଶୁମାନେ ସ୍ଥିର କଲେ ଯେ ସେମାନେ ସେହି ସୁନ୍ଦର ସ୍ଥାନର ସନ୍ଧାନରେ ଯିବେ । ''ଆକାଶ ଯାଏଁ ତ ଯାଇଛୁ । ଆଉ ଟିକିଏ ତଳକୁ ଗଲେ, କିଛି ଅସୁବିଧା ନାହିଁ । ଦେଖିବା କେଉଁଠାରୁ ସୁନ୍ଦର ସ୍ଥାନ ରହିଛି ।''

ଶିଶୁମାନେ ଉତ୍ସାହର ସହ ତଳକୁ ଖସିବାକୁ ଲାଗିଲେ । ଯେମିତି ଆକାଶର ତଳକୁ ଗଲେ, ସେମାନଙ୍କର ମନ ଆନନ୍ଦରେ କୁରୁଳି ଉଠିଲା । ସତରେ ତ ବହୁତ ସୁନ୍ଦର ସ୍ଥାନ ! ବିଶାଳ ସମୁଦ୍ରର ତରଙ୍ଗ ବି କେତେ ସୁନ୍ଦର ଦେଖାଯାଉଥାଏ । ସେହି ସମୁଦ୍ର ଆଦିର ଛାତିରେ ଅନେକ ଜାହାଜ ଓ ନଉକାକୁ ଭସାଇ ନେଉଥାନ୍ତି କିଛି ମଣିଷ ।

ପୁଣି କେତେ ପରିବ୍ୟାପ୍ତ ସବୁଜିମା । ଅନେକ ଫୁଲ, ଫଳରେ ସୁଶୋଭିତ । କେତେ ମନୋରମ ପାହାଡ଼, ପର୍ବତ, ପୁଣି ବିଶାଳ ବିଶାଳ ଘରଦ୍ୱାର, ମଠ, ମନ୍ଦିର । ସରଗର ଶିଶୁମାନେ ଦେଖିଲେ ଯେ ସେଠାରେ ମଧ୍ୟ ତାଙ୍କ ଭଳି ଶିଶୁମାନେ ମନ ଆନନ୍ଦରେ ଖେଳୁଛନ୍ତି ।

ସେମାନଙ୍କର ଏବେ ଧାରଣା ହେଲା ଯେ ମଣିଷମାନଙ୍କର ଏହି ପୃଥିବୀ ସରଗଠାରୁ ବି ସୁନ୍ଦର । ତେବେ ଯେହେତୁ ସେମାନେ ଦେବଶିଶୁ, ତେବେ ସେମାନେ ପୃଥିବୀ ଶିଶୁଙ୍କ ପାଖକୁ ଗଲେ କାଳେ କ'ଣ ଅସୁବିଧା ହେବ ଭାବି ସେଠାରୁ ଫେରିଗଲେ; କିନ୍ତୁ ସ୍ଥିରକଲେ ଯେ ଆକାଶରେ ତାରା ହୋଇ ସେମାନେ ସବୁଦିନ ସରଗଠାରୁ ସୁନ୍ଦର ଏହି ପୃଥିବୀକୁ ଦେଖିବେ ।

ସୌଭାଗିନୀ, ରଟିଲୋ, ରେଂଚ, ପୁରୀ- ୭୫୨୧୧୪

---

# ପାଟିମୁଆଁ

✤ ଜଣେ ମହିଳା ଓ ଭଦ୍ରଲୋକଟେ ଟ୍ରେନରେ ବସି ଯାଉଥାନ୍ତି ।

ମହିଳାଜଣକ ଭଦ୍ରଲୋକଙ୍କୁ ଚାହିଁ କହିଲେ– ମହାଶୟ, ଆପଣ ଯେତେଥର ହସୁଛନ୍ତି, ସେ ହସ ଦେଖି ମୁଁ ଆପଣଙ୍କୁ ଆମ ଘରକୁ ନିମନ୍ତ୍ରଣ କରିବାକୁ ଇଚ୍ଛା ହେଉଛି ।

ଭଦ୍ରଲୋକ- ଓଃ ଖୁସିର କଥା ! ଆପଣ ବିବାହିତ ନା ଅବିବାହିତ ?

ମହିଳା- ନା, ମୁଁ ଜଣେ ଦନ୍ତ ଚିକିତ୍ସକ ।

✤ ଜଣେ ସରଦାର୍ ଚୋପା ଲାଗିଥିବା ଗୋଟିଏ କଦଳୀ ଖାଉଥିଲେ । ସେତିକିବେଳେ ଜଣେ ଲୋକ ଏହା ଦେଖି ପଚାରିଲା– ଚୋପା ନ ଛଡ଼େଇ କାହିଁ ଖାଉଛ ?

ସରଦାର୍ କହିଲେ– ଚୋପା ଭିତରେ ତ କଦଳୀ ଅଛି ବୋଲି ମୁଁ ଜାଣିଛି, ଆଉ ଛଡ଼େଇ କି ଦେଖିବି କାହିଁକି ?

✤ ଜଣେ ମହିଳା ସିଙ୍ଗଡ଼ାର ବାହାରପଟ ଭାଙ୍ଗି ଭିତର ଆଳୁପୁର ଖାଉଥିଲା । ଜଣେ ଦେଖି ପଚାରିଲେ- ପୂରା ସିଙ୍ଗଡ଼ାଟା କାହିଁ ଖାଉନାହାନ୍ତି ?

ମହିଳା- ମୁଁ ଜଣେ ରୋଗୀ, ଡାକ୍ତର ବାହାର ଜିନିଷ ନ ଖାଇବାକୁ କହିଛନ୍ତି ।

**--ରଶ୍ମି ସାହୁ, ନୂଆଦିଲ୍ଲୀ**

# ବିଜ୍ଞାନ ସାର୍‌ଙ୍କ ସମୟ ସାରଣୀ

ଶ୍ରୀମତୀ ରାଧାରାଣୀ ତ୍ରିପାଠୀ

ଦିନ ପ୍ରାୟ ଦଶଟା ହୋଇଥିବ । ତାଙ୍କ ଘର ଆଗରେ କେତେ ଗାଡ଼ି, ମଟର, ବାଇକ୍ ଆସି ଲାଗିଲା । ସାମ୍ବାଦିକମାନେ ତାଙ୍କ ଘରର ଛୋଟ ଅଗଣାରେ ଭିଡ଼ ଜମାଇଦେଇଥାନ୍ତି । କେହି ଜଣେ ଯାଇ ଘର କବାଟ ଠକ୍ ଠକ୍ କଲେ । ଘରଭିତରୁ ବାହାରି ଆସିଲେ ଗଣେଶର ବାପା ବୀରକିଶୋର ଦାଶ ।

ଏତେ ସାମ୍ବାଦିକ, ଏତେ ଲୋକ ଭିଡ଼ ଦେଖି ମନେ ମନେ ପ୍ରମାଦ ଗଣିବାକୁ ଲାଗିଲେ । କ'ଣ ହେଲା ? କାହିଁକି ଏତେ ଭିଡ଼ ? ଏଇ ସାମ୍ବାଦିକଗୁଡ଼ାଙ୍କୁ ନା ତାଙ୍କର ଭାରି ଡର ।

ହଠାତ୍ ଜଣେ ସାମ୍ବାଦିକ ପଚାରିଦେଲେ, "ଆପଣ ଗଣେଶ ଦାଶଙ୍କ ବାପା ? ଗଣେଶବାବୁ କାହାନ୍ତି ? ତାଙ୍କୁ ଟିକେ ଡାକିଦେଲେ । ପ୍ରଥମେ ତାଙ୍କ ସହ କଥାବାର୍ତ୍ତା । ତା'ପରେ ଆପଣଙ୍କର ବି ଇଣ୍ଟରଭ୍ୟୁ ନେବୁ ଯେ ।"

ଡରିଗଲେ ବୀରକିଶୋରବାବୁ, "କ'ଣ ହେଲା ସାର୍ ? ଦେଖନ୍ତୁ ଯଦି କିଛି ଭୁଲ୍ କରିଦେଇଛି, ମୁଁ କ୍ଷମା ମାଗିନେଉଛି । ସେ ଛୋଟପିଲାଟା ।" ଏଣେ ମନେ ମନେ ଭାବୁଥାନ୍ତି– କ'ଣ କରିଛି ଏ ବାଳୁଙ୍ଗା ନିଶ୍ଚୟ । କ'ଣ ଗୋଟିଏ ବଡ଼ କାଣ୍ଡ କରିପକେଇଛି, ନ ହେଲେ ଏ ସାମ୍ବାଦିକମାନେ କାହିଁକି ଖୋଜୁଥାନ୍ତେ ତାକୁ ?

ଅଚାନକ ଭିଡ଼ ଚିରି ପଶିଆସିଲେ ଜଣେ ଭଦ୍ରଲୋକ, "ସାର୍ ନମସ୍କାର ।" ଆରେ ଏ ତ ଗଣେଶର ବିଜ୍ଞାନ ସାର୍ । ଟିକିଏ ସାଷ୍ଟାମ ହେଲେ ବୀରକିଶୋର–ବାବୁ । ବିକଳରେ ବଲ୍‌ବଲ୍ ଚାହିଁଥାନ୍ତି ସାର୍‌ଙ୍କ ମୁହଁକୁ । ସାର୍ ପଚାରିଲେ, "ସେ ବାଳୁଙ୍ଗା, ଗୋବରଗଣେଶ ଗଲା କୁଆଡ଼େ ? ତା'କୁ ଟିକିଏ ଡାକନ୍ତୁ... ।" ବୀରକିଶୋର–ବାବୁ ହାତ ଯୋଡ଼ି ପଚାରିଲେ, "ସେ କ'ଣ କରିଛି ସାର୍ ? କିଛି ଗୋଟିଏ ବଡ଼କାଣ୍ଡ ଭିଆଇଛି ନିଶ୍ଚୟ । ତେବେ ସାର୍ ଆପଣ ତାକୁ କ୍ଷମା କରିଦିଅନ୍ତୁ । ଆଉ ଏମାନଙ୍କୁ ବି କହନ୍ତୁ, ଏଠୁ ଚାଲିଯିବେ ।"

"କ'ଣ କହିଲେ, କାଣ୍ଡ ବୋଲି କାଣ୍ଡ କରିଛି । ସେ ଅପଗଣ୍ଡକୁ ତ ନିଶ୍ଚୟ ଭେଟିବାକୁ ପଡ଼ିବ । ତା' ସାକ୍ଷାତକାର ସାରା ଓଡ଼ିଶାରେ ପ୍ରଚାରିତ ହେବା ଦରକାର । ବୁଝିଲେ, ଖାଲି ତା'ର କାହିଁକି, ଆପଣମାନଙ୍କର ବି ସାକ୍ଷାତକାର ହେବ ଏତେ ଗୁଣବନ୍ତ ପୁତ୍ରର ପିତାମାତା ହିସାବରେ । ଆରେ ମୋର ବି ତ ହେବା ଉଚିତ ଏଡ଼େ ଯୋଗ୍ୟତମ ଛାତ୍ରର ଶିକ୍ଷକ ହିସାବରେ ।"

ଗଣେଶ ଏପଟେ ଗୋଟାପଣେ ଥରୁଥାଏ । ଆଜି ଏଚ୍.ଏସ୍.ସି. ପରୀକ୍ଷାଫଳ ଆସିଛି । ତା'ର କ'ଣ ହୋଇଥିବ କେଜାଣି ? ବାପା ତ ଫର୍ମ ପୂରଣ ଦିନଠୁ ଟି.ଭି. କାଟି ଦେଇଛନ୍ତି । ବିଜ୍ଞାନ ସାର୍‌ଙ୍କର ସେ ଦିନର କଥା ଆଲାର୍ମ ବାଜିଲା ପରି ତା' କାନରେ ପିଟି ହୋଇଯାଉଛି । ବିଶେଷ କରି ତାକୁ କହିଥିଲେ, "ବାବା ଗୋବରଗଣେଶ, ମୁଁ ତିଆରିଥିବା ରୁଟିନ୍‌ରେ ଆପଣ ଟିକିଏ ବିଶେଷ ଧ୍ୟାନଦେବେ, ବୁଝିଲେ । ଅନ୍ୟ ପିଲା ତ ଗୋଟେ, ଦି'ଟା ବିଷୟରେ ଦୁର୍ବଳ ଆଉ ଆପଣ ତ ଅଲଗା । ଆପଣଙ୍କ ଶରୀର ପରି ମସ୍ତିଷ୍କଟା ବି ବେଶ୍ ମୋଟାସୋଟା । ଆଉ ହଁ, ମୁଁ ତୁମ ସମସ୍ତଙ୍କୁ ସାବଧାନ କରିଦେଉଛି ଯେ ମୁଁ କିନ୍ତୁ କିଛି ବାହାନା ଶୁଣିବାକୁ ପ୍ରସ୍ତୁତ ନୁହେଁ । ଯେଉଁ ପିଲା

ମୋତେ ନିରାଶ କରିବ, ସିଧା ସାମ୍ବାଦିକ ଧରି ତା' ଘରେ ପହଞ୍ଚିଯିବି ମୁଁ । ତେଣିକି ଯାହାହେବ ଦେଖାଯିବ ।"

ଗଣେଶର ଭାବନାକୁ ପୂର୍ଣ୍ଣଛେଦ ପକାଇ ଘର ଭିତରକୁ ପଶିଆସିଲେ ବିଜ୍ଞାନ ସାର୍ । ତା'କୁ ଦେଖି କହିଲେ, "କିରେ ଖୁଣ୍ଟିଟା ପରି ଠିଆହେଇଛୁ କ'ଣ ? ବାହାରେ ଏତେ ଲୋକ, ଏତେ ସାମ୍ବାଦିକ ତୋତେ ଦେଖିବା ପାଇଁ ଭିଡ଼ ଜମେଇଛନ୍ତି...ଚାଲୁନୁ, ଚାଲ୍ ।"

"— ସାର୍!" କେବଳ ଏତିକି ବାହାରିପଡ଼ିଲା ଗଣେଶ ମୁହଁରୁ । ତା'ପରେ ସାର୍ଙ୍କ ସହ ସେ ବାହାରିଆସିଲା ବାହାରକୁ । ଗଣେଶକୁ ଦେଖି ସାମ୍ବାଦିକଙ୍କ ଭିତରେ ଠେଲାପେଲା ଲାଗିଗଲା । ଜଣେ ସାମ୍ବାଦିକ ପଚାରିଲେ, "ଗଣେଶବାବୁ, ଆପଣ ଦିନକୁ କେତେ ଘଣ୍ଟା ପରିଶ୍ରମ କରୁଥିଲେ ?" ଆଉ ଜଣେ ସାମ୍ବାଦିକ ପଚାରିଲେ, "ଆଚ୍ଛା କହିଲ, ତୁମକୁ ପଢ଼ାପଢ଼ିରେ ବିଶେଷ ଭାବେ କିଏ ସାହାଯ୍ୟ କରୁଥିଲେ ?"

କିଛି ବୁଝି ପାରୁ ନ ଥାଏ ଗଣେଶ, ଏ ସବୁ କ'ଣ ହେଉଛି । ଏମାନେ ସବୁ ତାକୁ ତାଚ୍ଛଲ୍ୟ କରୁଛନ୍ତି ନା ପ୍ରଶଂସା ଦଉଛନ୍ତି । ସେ ବିକଳ ହେଇ ଚାହିଁଲା ବିଜ୍ଞାନ ସାର୍ଙ୍କ ମୁହଁକୁ । ସାର୍ ହସିଦେଇ କହିଲେ, "ଅଭିନନ୍ଦନ... ତୁ ସାରା ଓଡ଼ିଶାରେ ପ୍ରଥମ ହୋଇଛୁ ।'' ତଥାପି ଗଣେଶକୁ ବିଶ୍ୱାସ ଲାଗୁ ନ ଥାଏ । ତା'ବାପା ବି ବିଶ୍ୱାସ କରିପାରୁ ନ ଥିଲେ । ସେ ପୁଣି ଥରେ ଚାହିଁଲା ସାର୍ଙ୍କ ମୁହଁକୁ । ଏବେ ତା ମନରେ ବିଶ୍ୱାସ ଆଉ ଅବିଶ୍ୱାସର ଅଯୁତ ପ୍ରଶ୍ନ । ତା' ଆଖି ଦୁଇଟି ସତ୍ୟାସତ୍ୟ ଜାଣିବା ପାଇଁ ତତ୍ପର ହୋଇଉଠୁଥିଲା ଯେମିତି । ହଠାତ୍ ତା ଅଜାଣତରେ ତା ପାଟିରୁ ବାହାରିଆସିଲା, "କ'ଣ କହୁଛନ୍ତି!"

ସାର୍ ତାକୁ କୁଣ୍ଢାଇ ଧରି କହିଲେ, "ହଁରେ ବାପା, ହଁ । ମୁଁ ତୋ ପାଇଁ ଗର୍ବିତ ।'' ଅତିଶୟ ଭାବାବେଗରେ ସାର୍ଙ୍କ କଣ୍ଠ ବାଷ୍ପରୁଦ୍ଧ ହୋଇଉଠୁଥାଏ ।

ପୁଣି ଆରମ୍ଭ ହୋଇଗଲା ସାମ୍ବାଦିକଙ୍କ ପ୍ରଶ୍ନ । କେତେବେଳେ ସାର୍ଙ୍କୁ, କେତେବେଳେ ବାପାଙ୍କୁ ତ କେତେବେଳେ ମା'ଙ୍କୁ । ଏସବୁ ଯେମିତି କୋଉ ସିନେମାର ସୁଟିଂ ପରି ମନେହେଉଥାଏ ଗଣେଶକୁ । ହଠାତ୍ ଜଣେ ସାମ୍ବାଦିକ ଗଣେଶକୁ ପଚାରିଲେ, "ତୁମେ ଏ ସଫଳତାର ଶ୍ରେୟ କାହାକୁ ଦେବାକୁ ଚାହଁ ?" 'ଏକ ମିନିଟ୍' କହି ସେ ପଶିଗଲା ଘର ଭିତରକୁ । କିଛି ସମୟ ପରେ ପୁଣି ଫେରିଆସିଲା । ଏବେ ତା ହାତରେ ଥିଲା ଖଣ୍ଡେ ଚାରିଚଉତା କାଗଜ ।

ସେ ସେଇ କାଗଜକୁ ସମ୍ପୂର୍ଣ୍ଣ ଖୋଲି ଧରି ସାମ୍ବାଦିକମାନଙ୍କ ଉଦ୍ଦେଶ୍ୟରେ କହିଲା,"ମୁଁ ଶ୍ରେୟ ଦେବାକୁ ଚାହୁଁଛି ଏଇ ରୁଟିନ୍‌କୁ, ବିଜ୍ଞାନ ସାର୍ଙ୍କ ରୁଟିନ୍ ।''

ସାର୍ ଭକୁଆଙ୍କ ପରି ଚାହିଁଥାନ୍ତି ଗଣେଶର ମୁହଁକୁ । ନା ଥିଲା ତାଙ୍କ ମୁହଁରେ କିଛି ଭାଷା ନା କିଛି ପଚାରିପାରିବାର ଶକ୍ତି । ଗଣେଶ ସାର୍ଙ୍କ ପାଦ ଛୁଇଁ ଜୁହାର କଲା । କହିଲା, ''ହଁ ସାର୍ ଆପଣ ତିଆରି କରିଦେଇଥିବା ଏଇ 'ରୁଟିନ୍' ହିଁ ଆଜି ମୋତେ ସଫଳତାର ସ୍ୱାଦ ଚଖାଇଛି ।"

ଗଣେଶକୁ ତାଙ୍କ ଛାତିକୁ ଆଉଜାଇ ନେଉଥିଲେ ବିଜ୍ଞାନ ସାର୍, ନିଜ ଅଜାଣତରେ ।

ଭାରତୀ କୁଟୀର, ଡୁଙ୍ଗୁରିପାଲି- ୭୬୭୦୨୩, ସୁବର୍ଣ୍ଣପୁର

# ବନ୍ଧୁ ହେବ ତ ଏମିତି

ଡକ୍ଟର ହେମନ୍ତ କୁମାର ଛୋଟରାୟ

ଇଂଲଣ୍ଡ ଦେଶର କଥାଟିଏ । ଦୀର୍ଘ ବର୍ଷ ତଳେ ସେହି ଦେଶର 'ୱେଷ୍ଟ ମିନିଷ୍ଟର' ନାମକ ପ୍ରସିଦ୍ଧ ବିଦ୍ୟାଳୟରେ ପାଠ ପଢୁଥିଲେ ଦୁଇବନ୍ଧୁ । ଜଣଙ୍କ ନାଁ 'ନିକୋଲାସ' ଓ ଆର ଜଣଙ୍କ ନାଁ 'ବେକ୍' । ନିକୋଲାସ୍ ଭଲ ପଢ଼େନାହିଁ । ସବୁବେଳେ ମିଛ କହେ । ଦୁଷ୍ଟାମି କରେ; କିନ୍ତୁ ବେକ୍ ଥିଲା ଠିକ୍ ତା'ର ଓଲଟା । ସେ ଥିଲା ସରଳ, ପରିଶ୍ରମୀ ଓ ସତ୍ୟବାଦୀ । ଦୁହେଁ ପରସ୍ପର ଅଲଗା ଗୁଣର ହୋଇଥିଲେ ହେଁ ଦୁହିଙ୍କର ବନ୍ଧୁତା ରହିଥିଲା ଅତୁଟ ।

ପାଠପଢ଼ା ସମୟରେ ଦିନେ ଘଟିଲା ଗୋଟିଏ ଘଟଣା । ବିଦ୍ୟାଳୟକୁ ଶିକ୍ଷକ ଆସିବାରେ ସେଦିନ ବିଳମ୍ବ ହୋଇଥାଏ । ଶିକ୍ଷକଙ୍କ ଅନୁପସ୍ଥିତିରେ ସେତେବେଳେ ଶ୍ରେଣୀଗୃହରେ ସମସ୍ତ ପିଲା କଥାବାର୍ତ୍ତାରେ ମଜ୍ଜିଯାଇଥିଲେ । ନିକେଲାସ୍ ସୁଯୋଗ ପାଇ ଦୁଷ୍ଟାମି କରିବାରେ ଲାଗିପଡ଼ିଲା । ଶ୍ରେଣୀଗୃହରେ ଟଙ୍ଗାଯାଇଥିଲା ଗୋଟିଏ ବଡ଼ ଦର୍ପଣ । କାନ୍ଥ ପାଖକୁ ଯାଇ ନିକୋଲାସ୍ ଦର୍ପଣକୁ ଫିଙ୍ଗିଦେଲା । ଦର୍ପଣଟି ତଳେ ପଡ଼ି ଭାଙ୍ଗିଗଲା । ଦର୍ପଣ ଭାଙ୍ଗିଯିବାର ଶବ୍ଦ ଶୁଣି ସବୁ ପିଲା ଚମକିପଡ଼ିଲେ । ନିକୋଲାସ୍ ସେଠାରୁ ଖସିଯାଇ ସବୁ ପିଲାଙ୍କ ସହ ଚୁପ୍‌ଚାପ୍ ବସି ପଡ଼ିଲା । ସତେଯେମିତି ସେ ଗୋଟିଏ ଭଲପିଲା । କିଛି ସମୟ ପରେ ଶ୍ରେଣୀଗୃହକୁ ଶିକ୍ଷକ ଆସିଲେ । ଦର୍ପଣ ତଳେ ପଡ଼ି ଭାଙ୍ଗିଯାଇଥିବାର ଦେଖି ଭୀଷଣ ରାଗିଗଲେ । ପାଟି କରି ପଚାରିଲେ, "ଏ କାଣ୍ଡ କିଏ କରିଛି ? ଚୁପ୍‌ଚାପ୍ ଠିଆ ହୁଅ !" କେହି ଠିଆ ନ ହେବାରୁ ଶିକ୍ଷକ ଜଣ ଜଣ କରି ପଚାରିଲେ । ଯାହାକୁ ପଚାରିଲେ, ସିଏ ମନାକଲା । ନିକେଲାସ୍‌ର ପାଳି ପଡ଼ିଲାବେଳେ ସେ ମଧ୍ୟ ଭାଙ୍ଗିନାହିଁ ବୋଲି କହିଲା । ଏହା ପରେ ବେକ୍‌ର ପାଳି ପଡ଼ିଲା । ବେକ୍ ଜାଣିଥିଲା, ଏ କାଣ୍ଡ ନିକୋଲାସ୍ କରିଛି । ସେ ମାଡ଼ ଭୟରେ ମିଛ କହୁଛି । ଶିକ୍ଷକ ନିଶ୍ଚୟ ଅସଲ ଅପରାଧୀକୁ ଖୋଜି ବାହାର କରିବେ । ଯେତେବେଳେ ଜାଣିବେ ନିକେଲାସ୍ ଦର୍ପଣ ଭାଙ୍ଗିଛି, ତାକୁ ନିଶ୍ଚୟ ଦଣ୍ଡଦେବେ । ମିଛ କହିଥିବାରୁ ପିଟିପିଟି ତା ପିଠି ଫଟାଇଦେବେ । ବନ୍ଧୁର ପିଠି ଫାଟିଲେ ସେ ସହିପାରିବ ନାହିଁ । ଏକଥା ଭାବି ବନ୍ଧୁକୁ ବଞ୍ଚାଇବା ପାଇଁ ସେ ଠିକ୍ କଲା । ଠିଆ ହୋଇ ନିଜେ ଦର୍ପଣ ଭାଙ୍ଗିଛି ବୋଲି କହିଲା । ବେକ୍ ମୁହଁରୁ ଏକଥା ଶୁଣି ଶିକ୍ଷକ ତାକୁ ନିର୍ମମ ଭାବରେ ପିଟି ପକାଇଲେ । ମାଡ଼ ଖାଇ ତା ପିଠି ଫାଟିଗଲା । ବିଚରା ବେକ୍ ମାଡ଼ ଖାଇ ଚୁପ୍ ରହିଲା । କାନ୍ଦିଲା ନାହିଁ କିମ୍ବା ପାଟି ଖୋଲି କିଛି କହିଲା ନାହିଁ ।

ବିଦ୍ୟାଳୟ ଛୁଟି ହେଲା । ସବୁ ପିଲା ବେକ୍ ପାଖକୁ ଚାଲିଆସିଲେ । ତାକୁ ଘେରିଯାଇ ତା' ପାଇଁ ଦୁଃଖ ପ୍ରକାଶ କଲେ । କିଛି ସମୟ ରହି ଯିଏ ଯାହା ଘରକୁ ଚାଲିଗଲେ । କିନ୍ତୁ ନିକୋଲାସ୍ କୁଆଡ଼େ ନ ଯାଇ ବନ୍ଧୁ ପାଖରେ ମଥାନତ କରି ଠିଆହେଲା । ବେକ୍‌ର ତ୍ୟାଗକୁ ସେ ସାରା ଜୀବନ ଭୁଲିବ ନାହିଁ ବୋଲି କହିଲା । ବେକ୍ କହିଲା, "ବନ୍ଧୁ ! ଆଜିଠୁ ତୁମେ ଭଲପିଲା ହୋଇଯାଅ, ଆଉ ଦୁଷ୍ଟାମି କରନାହିଁ ।'' ନିକେଲାସ୍ ଶପଥ କଲା ବନ୍ଧୁଙ୍କ କଥା ନିଶ୍ଚୟ ରଖିବ ।

ସତକୁ ସତ ସେ ଆଉ ଦୁଷ୍ଟାମି କଲାନାହିଁ । ମନ ଦେଇ ପାଠ ପଢ଼ିଲା । ଜଣେ ସତ୍ୟବାଦୀ ଛାତ୍ର ପାଲଟିଗଲା । ଏହା ଦେଖି ଶିକ୍ଷକ ଓ ପିଲାମାନେ ଆଶ୍ଚର୍ଯ୍ୟ ହୋଇଗଲେ । ନିକୋଲାସ୍ ଶ୍ରେଣୀ ପରେ ଶ୍ରେଣୀ କୃତିତ୍ୱର ସହ ଉତ୍ତୀର୍ଣ୍ଣ

ହେଲା । ଶେଷରେ ବିଶ୍ୱବିଦ୍ୟାଳୟରେ ପଢ଼ିଲା । ପରିଶ୍ରମ କରି ବିଭିନ୍ନ ପ୍ରତିଯୋଗିତାମୂଳକ ପରୀକ୍ଷା ଦେଲା । ଭଗବାନ ମଧ୍ୟ ତା' ପ୍ରତି ସଦୟ ହେଲେ । ସେ ନ୍ୟାୟାଧୀଶ ପଦବୀରେ ଅଧିଷ୍ଠିତ ହେଲା । ସେ ବୁଝିପାରିଲା, ତାର ଏହି ପରିବର୍ତ୍ତନ ବନ୍ଧୁ ବେକ୍ ଲାଗି ହୋଇପାରିଛି । ଏ କଥାକୁ ସେ କେବେ ଭୁଲିବ ନାହିଁ ବୋଲି ମନେ ମନେ ସ୍ଥିରକଲା ।

ଇତିମଧ୍ୟରେ ଚାଳିଶ ବର୍ଷ ବିତିଗଲା । ଦୁଇବନ୍ଧୁ କେହି କାହା ସହିତ ସାକ୍ଷାତ ହୋଇପାରିଲେ ନାହିଁ । ଇଂଲଣ୍ଡରେ ସେତେବେଳ ଗୃହଯୁଦ୍ଧ ଲାଗିଥାଏ । ପ୍ରଜାତନ୍ତ୍ର ଓ ରାଜତନ୍ତ୍ର– ଏହିଭଳି ଦୁଇ ମତବାଦୀ ପରସ୍ପର ମଧ୍ୟରେ ଯୁଦ୍ଧରେ ଲିପ୍ତ ରହିଥାନ୍ତି । ବେକ୍ ଥାଏ ରାଜତନ୍ତ୍ରର ସମର୍ଥକ । ଯୁଦ୍ଧରେ ରାଜତନ୍ତ୍ରର ସମର୍ଥକମାନେ ହାରିଗଲେ । ପ୍ରଜାତନ୍ତ୍ରର ସମର୍ଥକମାନଙ୍କ ସଂଖ୍ୟା ଅଧିକ ଥିବାରୁ ସେମାନେ ଜିତିଗଲେ । ପ୍ରଜାତନ୍ତ୍ର ପକ୍ଷରୁ ସରକାର ଗଢ଼ାହେଲା । ଏହାର ଶାସକ ହେଲେ କ୍ରାମ୍ ବେଲ୍ । ସେ ଆଦେଶଦେଲେ ରାଜତନ୍ତ୍ରର ସମର୍ଥକମାନଙ୍କୁ ପ୍ରାଣଦଣ୍ଡରେ ଦଣ୍ଡିତ କର । ପୁଲିସ୍‌ମାନେ ରାଜତନ୍ତ୍ରର ସମର୍ଥକମାନଙ୍କୁ ଖୋଜିଲେ । ବେକ୍ ବିଚରା ରାଜତନ୍ତ୍ରର ସମର୍ଥକ ହୋଇଥିବାରୁ ପୁଲିସ୍ ହାତରେ ଗିରଫ୍ ହେଲା ।

ସେତେବେଳେ ଏକୋଜିଷ୍ଟର ନାମକ ସ୍ଥାନରେ ନ୍ୟାୟାଧୀଶ ଥାଏ ନିକୋଲାସ୍ । ବନ୍ଦୀ ବେକ୍‌କୁ ପୁଲିସ୍‌ମାନେ ସେଠାକୁ ଆଣିଲେ । ସେଠି ବେକ୍‌ର ବିଚାର ହେଲା । ଶାସକଙ୍କ ଆଦେଶ ଥିବାରୁ ନ୍ୟାୟାଧୀଶ ନିକୋଲାସ୍ ବାଧ୍ୟ ହୋଇ ତାକୁ ମୃତ୍ୟୁଦଣ୍ଡ ଶୁଣାଇଲା । ଆଦେଶ ଶୁଣାଇଲା ପରେ ସେ ବିଚଳିତ ହୋଇପଡ଼ିଲା । ସାକ୍ଷୀ, ପ୍ରମାଣ ଓ ଶାସକଙ୍କ ନିର୍ଦ୍ଦେଶକୁ ଦୃଷ୍ଟିରେ ରଖି ସେ ଏମିତି କରିଦେଲା ସିନା; କିନ୍ତୁ ତା ମନ ସମ୍ଭାଳିଲା ନାହିଁ ।



ବିଦ୍ୟାଳୟ ଜୀବନର ବନ୍ଧୁ ବେକ୍‌ର ଉପକାର ସୁଝିବାକୁ ସେ ଛଟପଟ ହେଲା । କିପରି ତାକୁ ମୁକ୍ତି ଦେବ, ସେହି ଚିନ୍ତାରେ ସେ ଅସ୍ଥିର ହୋଇଉଠୁଥାଏ । ଶେଷରେ ସ୍ଥିରକଲା ଶାସକ କ୍ରାମ ବେଲଙ୍କ ପାଖକୁ ଯାଇ ବନ୍ଧୁ ପାଇଁ କ୍ଷମା ପ୍ରାର୍ଥନା କରିବ ।

ଦୁଇ ରାତି, ଗୋଟିଏ ଦିନ ଘୋଡ଼ାରେ ବସି ସେ ଲଣ୍ଡନ୍ ଯାତ୍ରାକଲା । କେବଳ ବନ୍ଧୁ ପାଇଁ ନଦୀ, ନାଳ, ପାହାଡ଼, ପର୍ବତ ସବୁ ପ୍ରତିବନ୍ଧକକୁ ସେ ଅତିକ୍ରମ କଲା । ନ ଖାଇ ନ ପିଇ ସେ ଲଣ୍ଡନରେ ପହଞ୍ଚିଲା । ଯାଇ ଶାସକ କ୍ରାମ ବେଲ୍‌ଙ୍କୁ ସାକ୍ଷାତ କଲା । ତାଙ୍କ ନିକଟରେ ସେ ସବୁ କଥା ବର୍ଣ୍ଣନା କଲା । ବେକ୍ ତାର ଅନ୍ତରଙ୍ଗ ବନ୍ଧୁ– ଏ କଥା କହି ତା ପାଇଁ କ୍ଷମା ପ୍ରଦାନ କରିବାକୁ ପ୍ରାର୍ଥନା କଲା । ବହୁ କାକୁତିମିନତି ହେବା ପରେ କ୍ରାମ ବେଲ୍ ନିକେଲାସ୍ କଥାରେ ରାଜିହେଲେ । ବେକ୍‌କୁ ମୁକ୍ତିଦେବା ପାଇଁ ଆଦେଶ ଦେଲେ ।

ସେହି ଆଦେଶନାମା ଆଣି ନିକୋଲାସ୍ ବେକ୍‌ର ବନ୍ଦୀଶାଳାରେ ପହଞ୍ଚିଲା । ବେକ୍‌କୁ ମୁକ୍ତି କରାଇ ଖୁସିରେ ଗଦ୍‌ଗଦ୍ ହୋଇଗଲା । ବେକ୍‌ର ଉପକାର ସୁଝିଥିବାରୁ ନିଜକୁ ଧନ୍ୟ ମନେକଲା । ବେକ୍ ମଧ୍ୟ ମୃତ୍ୟୁଦଣ୍ଡରୁ ରକ୍ଷା



# ଜେଜେ ମୋର ଥିଲେ ବଢ଼ିଆ ପିଲା

ଶ୍ରୀ ବଶିଷ୍ଠ ଚରଣ ସ୍ୱାଇଁ

ପିଲାଟି ଥିଲି କ'ଣ କଲି
ନାତିକୁ ଦିନେ ମୁଁ କହି ବସିଲି
ବାପା ପୋଷିଥିଲେ ଦୁଇଟି ଶୁଆ
ସୁନା ପଞ୍ଜୁରୀରେ କି ଶୋଭା ଆହା !
ଶୁଆ ଦୁଇ କିନ୍ତୁ ମନକୁ ମାରି
ନୀଳ ଆକାଶକୁ ହୋଇଲେ ଝୁରି
ଦିନେ କ'ଣ କଲି
ପଞ୍ଜୁରୀ ଦୁଆର ଖୋଲି ମୁଁ ଦେଲି ।
ଆଇ ରଖିଥିଲେ ଏକ ନେଉଳ
ତା'ମୁହଁ ଦେଖନ୍ତି ପ୍ରତି ସକାଳ
ବଣବୁଦା ସାଥୀ ମନେ ପକେଇ
ଦୁଃଖେ ସଦା ଥିଲା ନେଉଳ ଭାଇ
ଦିନେ କ'ଣ କଲି
କିଆ ବଣେ ତାକୁ ଛାଡ଼ିଆସିଲି ।
ଭାଇ ରଖିଥିଲେ ଗୋଟିଏ ପାତି
ଛାଟେ ପିଟି ତାକୁ ନାଚ ଶିଖାନ୍ତି
ପାତିର ଆରତ ଚିତ୍କାର ଶୁଣି
ହେଉଥିଲା ମୋର ହୃଦୟ ହାଣି
ଦିନେ କ'ଣ କଲି
ତା' ବେକ ଦଉଡ଼ା କାଟି ମୁଁ ଦେଲି ।
ଖାଇଛି ସେ ପାଇଁ କାନ ରଗଡ଼ା
ପିଠିରେ ବିଧା ତ ଗାଲେ ଚାପୁଡ଼ା
ସବୁ ଶୁଣି ସାରି ନାତି କହିଲା
'ଜେଜେ ମୋର ଥିଲେ ବଢ଼ିଆ ପିଲା ।'

ରେବତୀ ୧୫୮୧, ଖଣ୍ଡଗିରିବାରି, ଖଣ୍ଡଗିରି, ଭୁବନେଶ୍ୱର-୩୦

---



ପାଇଥିବାରୁ ନିକୋଲାସ୍‌କୁ କୃତଜ୍ଞତା ଜଣାଇଲା । ବନ୍ଧୁ ଦି'ଜଣ ପରସ୍ପର ପରସ୍ପରକୁ କୋଳାଗ୍ରତ କରି ଆଖିରୁ ଅଶ୍ରୁ ଝରାଇଲେ । ଏହା ଦେଖି ଇଂଲଣ୍ଡବାସୀ କହିଲେ, 'ବନ୍ଧୁ ହେବ ତ ଏମିତି !'

ନାଗାବଗିଚା, ପ୍ରଥମଗଳି, ମଧୁବନ, ପୁରୀ-୨

---

✤ ପ୍ରାୟ ପ୍ରତ୍ୟେକ ମଣିଷ ନିଜର ଗୁଣବତ୍ତା ପ୍ରକାଶ କରିବାରେ ଜୀବନର ଅଧା ସମୟ ନଷ୍ଟ କରନ୍ତି, ଯାହାର ସେମାନେ ହକ୍‌ଦାର ନୁହନ୍ତି । **–ସାମୁଏଲ ଜନସନ୍**

✤ ରାଜନୀତିର ରୋଗଶଯ୍ୟାରେ ଜନସାଧାରଣ ବାରମ୍ବାର କଡ଼ ଲେଉଟାନ୍ତି, କାଳେ କେଉଁପଟେ ତାଙ୍କୁ ଆରାମ ଲାଗିବ । **–ଗେଟେ**

# ଲାଉତୁମ୍ବାରୁ ସଂସାର ସୃଷ୍ଟି

(ପୂର୍ବ ପ୍ରକାଶିତ ଉତ୍ତାରୁ)

ଶ୍ରୀ ଫକୀର ଚରଣ ପାଢ଼ୀ

ତା'ପରେ ଶିଶୁ ଦୁଇଟି ନାରଦଙ୍କ ପାଖରେ ରହି ଲାଳିତପାଳିତ ହେଲେ ।

ଇତିମଧ୍ୟରେ କିଛିକାଳ ଅତିବାହିତ ହୋଇଗଲା । ପ୍ରଳୟ ଜଳ କ୍ରମଶଃ ହ୍ରାସ ପାଇବାକୁ ଲାଗିଲା । ଯେଉଁ ଗଭୀର ତଥା ଖାଲୁଆ ଅଞ୍ଚଳମାନଙ୍କରେ ଜଳ ଜମି ରହିଲା, ସେସବୁ ମହାସାଗର ଓ ସାଗର ନାମରେ ନାମିତ ହେଲା । ତାକୁ ଜଳଭାଗ ବୋଲି କୁହାଗଲା । ଉଚ୍ଚଭୂମିମାନଙ୍କରୁ ପାଣି ଖସିଯିବାରୁ,ସେସବୁ ଇଲାକା ସ୍ଥଳଭାଗ ବୋଲି ଅଭିହିତ ହେଲା । ଯେଉଁ ଜଳଉତ୍ସମାନଙ୍କରୁ ପ୍ରଚୁର ଜଳ ବାହାରି ପ୍ରଳୟ ଘଟାଇଥିଲା, ସେହି ଜଳଉତ୍ସଗୁଡ଼ିକର ମୁହଁରେ ଭଗବାନ୍ ପାହାଡ଼-ପର୍ବତ ସବୁ ସୃଷ୍ଟି କରି ଉଦ୍‌ଗତ ଜଳକୁ ଅଟକାଇଦେଲେ । ବର୍ଷା ହେବା ଫଳରେ ପାହାଡ଼, ପର୍ବତ ଓ ଉଚ୍ଚଭୂମିମାନଙ୍କରୁ ଯେଉଁ ଜଳଧାରା ସବୁ ନିର୍ଗତ ହେଲା, ସେସବୁ ନଦୀନାଳରେ ପରିଣତ ହେଲା । ଉଦ୍ଭିଦଜଗତ ନ ରହିଲେ ପ୍ରାଣୀଜଗତ ତିଷ୍ଠି ରହିପାରିବ ନାହିଁ । ତେଣୁ ଭଗବାନ୍ ସର୍ବପ୍ରଥମେ 'ମହୁଲଗଛ' ସୃଷ୍ଟି କଲେ । ତା'ପରେ ନାନା ଜାତିର ବୃକ୍ଷ, ଲତା, ତୃଣ, ଗୁଳ୍ମ, ବୁଦା ପ୍ରଭୃତି ଜାତ ହେଲା । ପରେ ସେସବୁ ଅରଣ୍ୟରେ ପରିଣତ ହେଲା । ପ୍ରାଣୀଜଗତ ସୃଷ୍ଟି ହେବାପାଇଁ ତା' ପୂର୍ବରୁ ମୋଟାମୋଟି ଭାବରେ ଏକ ଅନୁକୂଳ ବାତାବରଣ ତିଆରି ହୋଇଗଲା । କ୍ରମେ କୀଟପତଙ୍ଗ, ପଶୁ, ପକ୍ଷୀ ଓ ଅନ୍ୟାନ୍ୟ ଜୀବଜନ୍ତୁ ଜନ୍ମନେଲେ ।

ଏହାପରେ ପୁଣି ବହୁକାଳ ବିତିଗଲା । ନାରଦ ମୁନିଙ୍କ ଦ୍ୱାରା ପ୍ରତିପାଳିତ ପୁଅ ଓ ଝିଅ କ୍ରମେ ବଡ଼ ହୋଇଗଲେ । ଦିନେ ମୁନି ନାରଦ ସେ ଦୁହିଁଙ୍କୁ ପାଖକୁ ଡାକି ପ୍ରଥମେ ପୁଅଟିକୁ ପଚାରିଲେ, ''ଆରେ ପୁଅ ! ଏ ଝିଅଟି ତୋ'ର କ'ଣ ଲାଗିବ ?''

''ଭଉଣୀ'', ପୁଅଟି କହିଲା ।

ପୁଅଟି ସମ୍ପର୍କରେ କ'ଣ ଲାଗିବ ବୋଲି ନାରଦ ମହର୍ଷି ଝିଅଟିକୁ ପଚାରିବାରେ ସେ 'ଭାଇ' ଲାଗିବ ବୋଲି ଝିଅଟି ଉତ୍ତରଦେଲା ।

ପୁଅ ଓ ଝିଅଙ୍କ ଭିତରେ ସମ୍ପର୍କଟା ଭାଇ-ଭଉଣୀ ଜାଣିବା ପରେ ନାରଦ ମୁନିଙ୍କ ମନ ଫିକା ପଡ଼ିଗଲା । ଏ ଯେଉଁ ଜଟିଳ ପରିସ୍ଥିତି ସୃଷ୍ଟି ହେଲା, ତା'ର କିଛି ଗୋଟାଏ ସମାଧାନ ଲାଗି ସେ ଭଗବାନଙ୍କ ନିକଟକୁ ଗଲେ ।

''ନାରାୟଣ...ନାରାୟଣ...''ନାରଦ ମୁନି ବୀଣାବାଦନପୂର୍ବକ ପ୍ରଭୁଙ୍କ ନାମ ଉଚ୍ଚାରଣ କରି କରି ବିଷ୍ଣୁଲୋକରେ ପଦାର୍ପଣ କଲେ । ଭଗବାନ୍ ନାରଦଙ୍କୁ ସ୍ୱାଗତ ଜଣେଇ ପଚାରିଲେ, ''ଦେବର୍ଷି ! ସବୁ କୁଶଳ ତ ?''

''ପ୍ରଭୁ ! ଆପଣଙ୍କର ଅସୀମ କରୁଣାରୁ ସବୁ କୁଶଳ, କିନ୍ତୁ...''

''କିନ୍ତୁ ପୁଣି କ'ଣ, ଦେବର୍ଷି ?'' ଭଗବାନ୍ ପଚାରିଲେ, ''ପ୍ରଭୁ ମୋ ପାଖରେ ରହି ସଯତ୍ନେ ପାଳିତ ହେଉଥିବା ପୁଅ-ଝିଅ ଦୁହିଁଙ୍କ ମଧ୍ୟରେ ସମ୍ପର୍କଟା କ'ଣ ବୋଲି ଜାଣିବାକୁ ଚାହିଁବାରେ ସେମାନେ ଭାଇ-ଭଉଣୀ ବୋଲି କହିଲେ । ତେବେ ଏ ଭାଇ-ଭଉଣୀଙ୍କୁ ନେଇ ମାନବ ସମାଜର ସୃଷ୍ଟି ପ୍ରକ୍ରିୟା କିପରି ଆରମ୍ଭ ହେବ ? ଏହି କଳ୍ପନା ମଧ୍ୟ କରାଯାଇ ନ ପାରେ!'' ନାରଦ କହିଲେ ।

ଭଗବାନ୍ ବଡ଼ ଅଡୁଆରେ ପଡ଼ିଗଲେ । ତାଙ୍କ



ପରିକଳ୍ପିତ ସଂସାରର ସକଳ ଉପାଦାନ ସୃଷ୍ଟି ସରିଲାଣି । କେବଳ ମାନବସମାଜ ସୃଷ୍ଟି ପ୍ରକ୍ରିୟାର ସୂତ୍ରପାତ ଘଟିଗଲେ, ତାଙ୍କ ସଂସାର ସର୍ଜନାର ଚୂଡ଼ାନ୍ତ ରୂପରେଖ ଶେଷ ହୋଇଯିବ । ତା'ପରେ ସେ ନିଶ୍ଚିନ୍ତ ହେବେ; କିନ୍ତୁ ଏ ଯେଉଁ ବିଷମ ସମସ୍ୟା ଦେଖାଦେଲାଣି, ସେଥିରେ ସେ ନିଶ୍ଚିନ୍ତ ହେବେ କ'ଣ, ବରଂ ଆହୁରି ବ୍ୟସ୍ତ ଓ ବିବ୍ରତ ହୋଇପଡ଼ିଲେ । ମଣିଷ ସମାଜର ସୃଷ୍ଟି ଲାଗି ପ୍ରଥମେ ଜଣେ ପୁରୁଷ ଓ ଜଣେ ନାରୀର ପ୍ରୟୋଜନ । ପୁଅ ଓ ଝିଅ ଦୁଇଜଣଙ୍କୁ ସେ ସେହି ଦୃଷ୍ଟିରୁ ହିଁ ପ୍ରଥମରୁ ଗ୍ରହଣ କରିନେଇଥିଲେ; କିନ୍ତୁ ଏବେ ଶେଷମୁହୂର୍ତ୍ତରେ ଜଣାପଡ଼ିଲାଣି ଯେ, ଦୁହେଁ ସମ୍ପର୍କରେ ଭାଇ ଓ ଭଉଣୀ । ଭାଇ ଓ ଭଉଣୀକୁ ନେଇ ମଣିଷ ଜାତିର ସୃଷ୍ଟି ପ୍ରକ୍ରିୟାର ଆୟମାରମ୍ଭ କେମିତି ବା କରାଯିବ !! ଏହା ଯେ ସମ୍ପୂର୍ଣ୍ଣ ଗର୍ହିତ ! ତେବେ ଏବେ ଏଥକୁ ଉପାୟ କ'ଣ ? ଆଉ ଯେ ବିଳମ୍ବ କରିହେବନାହିଁ । ଶେଷରେ ସେ ଆଉ କୌଣସି ଉପାୟ ନ ଦେଖି ନାରଦଙ୍କୁ କହିଲେ, ''ଦେବର୍ଷି ! ଆଉ ସମୟ ନାହିଁ କି ଉପାୟ ବି ନାହିଁ । ସମସ୍ୟାର ସମାଧାନ ନିମିତ୍ତ ଏବେ ମୁଁ ମୋର ଶେଷ ଅସ୍ତ୍ର ପ୍ରୟୋଗ କରିବି, ଅର୍ଥାତ୍, 'ମାୟା' ରଚନା କରିବି ।''

''ପ୍ରଭୁ ! ଆପଣ ଇଚ୍ଛାମୟ । ଯେତେବେଳେ ଆପଣ ଯାହା ଇଚ୍ଛା କରିବେ, ସେତେବେଳେ ତାହା ନିଶ୍ଚୟ ଘଟିବ । ଆଉ କେହି ତାହାକୁ ପ୍ରତିରୋଧ କରିପାରିବେ ନାହିଁ ।'' ନାରଦ କହିଲେ ।

ତା'ପରେ ସ୍ୱୟଂ ଭଗବାନ 'ମାୟା' ରଚନା କଲେ । ଫଳରେ ପୁଅ ଓ ଝିଅଙ୍କ ଚେହେରାରେ ପରିବର୍ତ୍ତନ ଘଟିଲା । ସେମାନେ ଯେ ଭାଇ-ଭଉଣୀ, ଏକଥା ଉଭୟେ ଏକବାରେ ଭୁଲିଗଲେ । ଆଉ କେହି କାହାକୁ ମୋଟେ ଚିହ୍ନିପାରିଲେ ନାହିଁ । ଉଭୟ ଉଭୟଙ୍କ ନିକଟରେ କେବଳ ଜଣେ ପୁରୁଷ ଓ ଜଣେ ନାରୀ ରୂପରେ ପରିଚିତ ହେଲେ । ଫଳରେ ନିଜ ନିଜ ଭିତରେ ଗଭୀର ଅନୁରାଗ ଓ ଅନୁରକ୍ତି ପ୍ରକାଶ କଲେ । ବାନ୍ଧି ହୋଇପଡ଼ିଲେ ଅମାପ ସ୍ନେହ, ଶ୍ରଦ୍ଧା, ପ୍ରେମ ଓ ମମତାର ଡୋରିରେ । ଯୌବନର ଅପୂର୍ବ ଆକର୍ଷଣ କ୍ରମେ ଦୁହିଁଙ୍କୁ ନିକଟତର କଲା । ଦୁହେଁ ଆନନ୍ଦରେ ଆତ୍ମହରା ହେଲେ ।

ମଣିଷ ସମାଜ ସୃଷ୍ଟିର ମାହେନ୍ଦ୍ର ମୁହୂର୍ତ୍ତ ଆସି ଉପସ୍ଥିତ ହୋଇଗଲା । ସେହି ସୃଷ୍ଟି ପ୍ରକ୍ରିୟାର ଶୁଭାରମ୍ଭ ପାଇଁ ଭଗବାନ ସେହି ପୁରୁଷ ଓ ନାରୀକୁ ମର୍ତ୍ତ୍ୟମଣ୍ଡଳକୁ ପ୍ରେରଣ କରି କହିଲେ, ''ତୁମେଦୁହେଁ ହେଉଛ ଏ ମହାନ୍ ସୃଷ୍ଟିର ଆଦ୍ୟପୁରୁଷ ଓ ପ୍ରକୃତି । ତୁମରିଠାରୁ ହିଁ ଏ ବହୁ ଆକାଙ୍କ୍ଷିତ

ମଣିଷ ଜାତିର ଉତ୍ପତ୍ତି ଘଟିବ ଏବଂ ଏହି ଧାରା ପୁରୁଷାନୁକ୍ରମେ ଯୁଗଯୁଗ ଧରି ଗଡ଼ିଚାଲିବ ପରବର୍ତ୍ତୀ ମହାପ୍ରଳୟ ପର୍ଯ୍ୟନ୍ତ । ଏବେ ତୁମେ ଯାଅ ଓ ମର୍ତ୍ତ୍ୟପୁରରେ ବାସକର ଏବଂ ସୃଷ୍ଟି ପ୍ରକ୍ରିୟାରେ ରତ ରହି ବଂଶବିସ୍ତାର କର ।''

ତା'ପରେ ସେହି ପୁରୁଷ ଓ ନାରୀ ମର୍ତ୍ତ୍ୟଧାମରେ ଅବତରଣ କଲେ । ମର୍ତ୍ତ୍ୟଧାମକୁ ପ୍ରେରଣ ପୂର୍ବରୁ ଭଗବାନ୍ ପୁରୁଷଙ୍କର ନାମକରଣ କରିଥିଲେ 'ଭୀମା' ଓ ନାରୀଙ୍କର ନାମକରଣ କରିଥିଲେ 'ଭୀମାଣୀ' । ଉଭୟଙ୍କର ବିବାହସମ୍ପନ୍ନ ହେବାପରେ ଆରମ୍ଭ ହେଲା ସୃଷ୍ଟିକ୍ରିୟା । ଜନ୍ମନେଲା ସୃଷ୍ଟିର ପ୍ରଥମ ମାନବ ଶିଶୁ । ଏହାପରେ ଏଇ ସନ୍ତାନ ଉତ୍ପାଦନ ପ୍ରକ୍ରିୟା ଅବ୍ୟାହତ ରହିଲା । ବଂଶବୃଦ୍ଧି ଘଟିଚାଲିଲା । ଶେଷରେ ତାହା ରୂପନେଲା ଏକ ବିଶାଳ ମାନବସମାଜରେ । ଏଇ ମାନବସମାଜ ଭୂ-ଭାଗରେ ସର୍ବତ୍ର ବିକ୍ଷିପ୍ତ ଭାବରେ ବସବାସ କରିବାକୁ ଲାଗିଲେ । ଆଜିର ଏଇ କ୍ରମବର୍ଦ୍ଧିଷ୍ଣୁ ମଣିଷ ସମାଜ ହେଉଛି, ସେହି ପ୍ରଳୟ ଜଳରେ ଭାସୁଥିବା ଲାଉତୁମ୍ୱାସ୍ଥ ଭାଇ-ଭଉଣୀଙ୍କର ଉତ୍ତରପୁରୁଷ ।

ଭୀମା ସ୍ଥଳଭାଗରେ ପ୍ରଥମେ ଚାଷକାର୍ଯ୍ୟର ଶୁଭାରମ୍ଭ କରିଥିଲେ । ଭୂମି କର୍ଷଣ, ବୀଜବପନ ଓ ଶସ୍ୟ ଅମଳ ସେ ହିଁ ଆରମ୍ଭ କରିଥିଲେ । ସେତେବେଳେ କୃଷି ଥିଲା ଏକମାତ୍ର ଓ ଉତ୍କୃଷ୍ଟ ଜୀବିକା ।

ମର୍ତ୍ତ୍ୟଲୋକରେ ଯେତେବେଳେ ମଣିଷଙ୍କ ସଂଖ୍ୟା ଆଶାତୀତ ଭାବରେ ବୃଦ୍ଧି ଘଟିଲା, ସେତେବେଳେ ଭଗବାନ ପୁଣି ଚିନ୍ତିତ ହୋଇପଡ଼ିଲେ । କାରଣ, ନିର୍ବିଘ୍ନରେ ଏତେ ଲୋକଙ୍କର ପରିପାଳନ କିପରି ହେବ ? ସମସ୍ତେ ତ କେବେହେଲେ ଗୋଟିଏ ପ୍ରକାର କର୍ମ କରିବେ ନାହିଁ । ଯଦି କରିବେ, ପୁଣି ଅନେକ ସମସ୍ୟା ଦେଖାଦେବ । ତେଣୁ ସେ ଏଇ ବିଷମ ସମସ୍ୟାର ସମାଧାନ କରିବାକୁ ଯାଇ ପ୍ରଥମେ ବର୍ଣ୍ଣବ୍ୟବସ୍ଥାର ପ୍ରଚଳନ କଲେ । ସେ ପାଞ୍ଚକୁଳ ଓ ପଚାଶ ଜାତି ସୃଷ୍ଟି କଲେ । କେଉଁ ଜାତିର ଲୋକେ କି ପ୍ରକାର ବୃତ୍ତି ଅବଲମ୍ବନ କରି ନିଜର ଭରଣପୋଷଣ କରିବେ, ସେଥିପାଇଁ ସେ ବିଭିନ୍ନ ବୃତ୍ତି ମଧ୍ୟ ଖଞ୍ଜିଦେଲେ । କୌଳିକ ବୃତ୍ତି ଗ୍ରହଣ କରି ସୁରୁଖୁରୁରେ ଯେ ଯାହାର ଜୀବିକା ନିର୍ବାହ କରିବାକୁ ଲାଗିଲେ ।

ଲାଉତୁମ୍ୱାରୁ ସଂସାର ସୃଷ୍ଟିର ଅୟମାରମ୍ଭ ହୋଇଥିବାରୁ ଭଗବାନ ଆଦିବାସୀଙ୍କୁ ଲାଉକୁ ତୁମ୍ୱା ଭାବରେ ପରବର୍ତ୍ତୀ ମହାପ୍ରଳୟ ପର୍ଯ୍ୟନ୍ତ ବ୍ୟବହାର କରିବା ପାଇଁ ଆଜ୍ଞା ଦେଲେ । ସେହି ସମୟରୁ ସେମାନେ ଲାଉକୁ ତୁମ୍ୱା ଭାବରେ ବିଭିନ୍ନ କାର୍ଯ୍ୟରେ ଏ ପର୍ଯ୍ୟନ୍ତ ଉପଯୋଗ କରିଆସୁଅଛନ୍ତି ।

ବୋଲକଣା, ବେରବୋଇ, ପୁରୀ

ଆଜିକାଲିର ସମାଜରେ ଦ୍ରୁତ ବଦଳୁଥିବା ସାମାଜିକ ତଥା ଅନ୍ୟାନ୍ୟ ପ୍ରଥାସବୁକୁ ବିଶ୍ଳେଷଣ କଲେ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ--

କପଡ଼ା ହୋଇଗଲା ଛୋଟ- ଲାଜ କେଉଁଠାରୁ ଆସିବ ?

ରୁଟି ହୋଇଗଲା ବ୍ରେଡ୍- ବଳ କେଉଁଠାରୁ ଆସିବ ?

ଫୁଲ ହେଲା ପ୍ଲାଷ୍ଟିକର - ବାସ୍ନା କେଉଁଠାରୁ ଆସିବ ?

ଚେହେରା ହୋଇଗଲା ମେକ୍ଅପ୍‌ର- ସୌନ୍ଦର୍ଯ୍ୟ କେଉଁଠୁ ଆସିବ ?

ଶିକ୍ଷକ ହେଲେ ଟିଉସନ୍‌ର- ବିଦ୍ୟା କେଉଁଠାରୁ ଆସିବ ?

ଭୋଜନ ଆସିଲା ହୋଟେଲରୁ- ସ୍ୱାଦିଷ୍ଟ କେଉଁଠାରୁ ଆସିବ ?

ପ୍ରୋଗ୍ରାମ୍ ହୋଇଗଲା କେବୁଲର- ସଂସ୍କାର କେଉଁଠାରୁ ଆସିବ ?

ମଣିଷ ହୋଇଗଲା ଟଙ୍କାର- ଦୟା କେଉଁଠାରୁ ଆସିବ ?

ସମ୍ପର୍କୀୟ ହୋଇଗଲେ ହ୍ୱାଟସ୍ଆପ୍‌ର- ଆପଣଙ୍କ ସହ ମିଶିବାକୁ କେଉଁଠୁ ଆସିବେ ?




ଶ୍ରୀ ପ୍ରଦୀପ କୁମାର ଦାଶ

୧ । ବିଶ୍ୱ ଶିକ୍ଷକ ଦିବସ କେବେ ପାଳନ କରାଯାଏ ?

୨ । ଡାଇବେଟିସ ରୋଗ ଚିହ୍ନଟ ପାଇଁ କେଉଁ ପରୀକ୍ଷା କରାଯାଏ ?

୩ । ପେଟ୍ରୋମାକ୍ସ ଲାଇଟ୍‌ର ଉଦ୍ଭାବକ କିଏ ?

୪ । ଜର୍ମାନୀ ଭାଷାରେ କିଏ ବାଇବେଲ୍ ଅନୁବାଦ କରିଥିଲେ ?

୫ । I.C.G. ର ପୂର୍ଣ୍ଣରୂପଟି କ'ଣ ?

୬ । ଭାରତୀୟ ରେଳ ଚଳାଚଳ କେବେ ଆରମ୍ଭ ହୋଇଥିଲା ?

୭ । ଓଡ଼ିଆ ଭାଷା ଦିବସ କେବେ ପାଳିତ ହୁଏ ?

୮ । 'ବିବ୍ଲିଓ ଥେରାପୀ'ର ଅର୍ଥ କ'ଣ ?

୯ । ସୂଚନା ଅଧିକାର ଆଇନ ପ୍ରଥମେ କେଉଁ ଦେଶରେ ପ୍ରଚଳିତ ହୋଇଥିଲା ?

୧୦ । ପ୍ରଥମ ସମ୍ବିଧାନ ପ୍ରଣୟନ କରିଥିବା ଦେଶର ନାମ କ'ଣ ?

୧୧ । ହିନ୍ଦୀ ଚଳଚ୍ଚିତ୍ର ଜଗତର ପ୍ରଖ୍ୟାତ ଗାୟକ ଆଭାସ କୁମାର ଗାଙ୍ଗୁଲି, କେଉଁ ନାମରେ ପରିଚିତ ।

ହରିଶଙ୍କର ରୋଡ, ବଲାଙ୍ଗିର- ୭୬୭୦୩୮

(ଉତ୍ତର ୩୩ ପୃଷ୍ଠାରେ)



## କହିଲ ଦେଖି ?

ପୂଜାରାଣୀ ମଲ୍ଲିକ

ପାଞ୍ଚୋଟି ଅକ୍ଷରେ ନାମ ମୋହର
ଓଡ଼ିଆ ଗ୍ରନ୍ଥ ମଧ୍ୟେ ଅଟଇ ସାର ।

ପ୍ରଥମ ଦ୍ୱିତୀୟ କରିଲେ ଯୋଗ
ମହାନ ଅର୍ଥକୁ ଜାଣିବ ଆଗ ।
ଦ୍ୱିତୀୟ ଚତୁର୍ଥ ଯଦି ଯୋଡ଼ିବ
ନାରୀର ବକ୍ଷରେ ସିଏ ତ ଥିବ ।
ତୃତୀୟ ଚତୁର୍ଥ ସଂଯୋଗ କଲେ
ସମ୍ଭାର ଅର୍ଥକୁ ବୁଝିବ ଭଲେ ।
ପ୍ରଥମ ଚତୁର୍ଥ ଏକାଠି ମିଶା
ନଶ୍ୱର ଅର୍ଥକୁ ସେଇଠି ବସା ।
ତୃତୀୟ ପଞ୍ଚମ ଦେଲେ ମିଶାଇ
ମୁଖ୍ୟ ଖାଦ୍ୟ ଅଟେ ସିଏ ତ ଭାଇ ।
ଦ୍ୱିତୀୟ ପଞ୍ଚମ କଲେ ଏକାଠି
ହସ୍ତ ଅନ୍ୟନାମ ପାଅରେ ବସି ।
ପ୍ରଥମ ପଞ୍ଚମ ଏକାଠି ନିଅ
ମତାମତ ଅର୍ଥ ସଭିଙ୍କି ଦିଅ ।

ଏହାର ଉତ୍ତର ଯିଏ କହିବ
ବଡ଼ଗ୍ରନ୍ଥଟିଏ ସିଏ ପାଇବ ।

ମାର୍ଫତ- ମାଧବୀଲତା ମଲ୍ଲିକ, କୋଷାଧକ୍ଷ, ଫକୀର ମୋହନ ସ୍ମୃତି ସଂସଦ, ଡିମିରି, ନୋଦା, କଟକ

(ଉତ୍ତର ୨୩ ପୃଷ୍ଠାରେ)

# ପଇଡ଼ ପାଣିର ମଜା

ଡାକ୍ତର ସଚ୍ଚିଦାନନ୍ଦ ଶତପଥୀ

ବାପା ଓ ମାଆଙ୍କ ସହିତ ଚନ୍ଦନ ସେଦିନ ପୁରୀ ବୁଲିବା ପାଇଁ ଯାଇଥିଲା । ପୁରୀ ଶ୍ରୀମନ୍ଦିରରେ ଜଗନ୍ନାଥ ଦର୍ଶନ ସାରି ସେମାନେ ସମୁଦ୍ର କୂଳକୁ ଗଲେ । ସମୁଦ୍ର-ବେଳାରେ ବାଲିରେ ଖେଳି, ସମୁଦ୍ର ପାଣିରେ ପଶି, ଢେଉକୁ ଛୁଇଁ ଚନ୍ଦନ ଖୁବ୍ ମଜାକଲା । କିଛି ସମୟ ଖେଳିବା ପରେ ଚନ୍ଦନକୁ ଭାରି ଥକ୍କା ଲାଗିଲା ଆଉ ଶୋଷ ବି କଲା । ସେ କହିଲା, "ବାପା, ଭାରି ! ଶୋଷ ଲାଗିଲାଣି । ଚାଲ କେଉଁଠି ଥଣ୍ଡା ପିଇବା ।" ତା' କଥା ଶୁଣି ବାପା କହିଲେ, "ଆରେ ଥଣ୍ଡା କାହିଁକି ପିଇବୁ? ସେଗୁଡ଼ାକ ଦେହ ପାଇଁ ଭାରି ଖରାପ । ଚାଲ ପଇଡ଼ ପାଣି ପିଇବା ।"

ତା' ପରେ ସେମାନେ ଜଣେ ପଇଡ଼ବାଲା ପାଖରୁ ପଇଡ଼ ପାଣି ପିଇଲେ । ପଇଡ଼ର ନାଳି ନଡ଼ିଆ ମଧ୍ୟ ଖାଇଲେ । ଚନ୍ଦନର ମନ ବୋଧ ହୋଇଗଲା ।  ଚନ୍ଦନ ପଚାରିଲା, "ଆଚ୍ଛା ବାପା ! ତୁମେ ଥଣ୍ଡାପାନୀୟକୁ ଖରାପ ଆଉ ପଇଡ଼ପାଣିକୁ ଭଲ ବୋଲି କାହିଁକି କହିଲ ?"

ବାପା କହିଲେ, "ଥଣ୍ଡାପାନୀୟ ଦେହ ପାଇଁ ଖରାପ । କାରଣ ଏଥିରେ ରହିଥିବା ରଂଗ, ସ୍ୱାଦ, ମହକ ସବୁ ହେଉଛି କୃତ୍ରିମ, ଯାହାକି ଦେହ ପାଇଁ ଅନିଷ୍ଟକାରୀ । ଅପରପକ୍ଷରେ ପଇଡ଼ପାଣି ହେଉଛି ଏକ ସମ୍ପୂର୍ଣ୍ଣ ପୁଷ୍ଟିକର ପାନୀୟ ଓ ଶହେ ପ୍ରତିଶତ ପ୍ରାକୃତିକ । କୌଣସି ଦୃଷ୍ଟିରୁ ଏହା ଭେଜାଲ୍ କିମ୍ବା କୃତ୍ରିମ ନୁହେଁ ।  ଏହା ବିଶୁଦ୍ଧ ଏବଂ ଜୀବାଣୁମୁକ୍ତ । ଅନ୍ୟାନ୍ୟ ଫଳରସ ପରି ଏହା ସାଙ୍ଗେ ସାଙ୍ଗେ ଦେହକୁ ଫୂର୍ତ୍ତି ଦେଇଥାଏ । ଏହାର ସୁଆଦ ନିଆରା ।"

ଚନ୍ଦନ ପଚାରିଲା, "ଆଚ୍ଛା ବାପା ! ଆମେ ଘରେ ଯେଉଁ ନଡ଼ିଆ ଖାଉ, ତା'ର ପାଣି ଆଉ ପଇଡ଼ ପାଣି କ'ଣ ସମାନ ?" ବାପା କହିଲେ,"ନାହିଁରେ ନଡ଼ିଆ ପାଣିଠାରୁ ପଇଡ଼ ପାଣି ଖାଦ୍ୟଗୁଣ ଦୃଷ୍ଟିରୁ ଭଲ । ନଡ଼ିଆର କଷି ବା ପ୍ରଥମ ଅବସ୍ଥାକୁ ପଇଡ଼ ବୋଲି କୁହାଯାଏ । ଏହାର ବୈଜ୍ଞାନିକ ନାଁ ହେଉଛି 'କୋକେସ୍ ନୁସିଫେରା' । ପଇଡ଼ ପାଣି ହେଉଛି ନଡ଼ିଆର ତରଳ ଭ୍ରୁଣପୋଷ । ଅର୍ଥାତ୍ ଏହାରିଠାରୁ ପୋଷକ ପାଇ ନଡ଼ିଆର ଶସ ତିଆରି ହୋଇଥାଏ । ତେଣୁ ଏହାର ଖାଦ୍ୟଗୁଣରେ କେତେ ଉନ୍ନତ, ତାହା ତୁ ସହଜରେ ବୁଝିପାରୁଥିବୁ । ଚନ୍ଦନ ପଚାରିଲା, "ପଇଡ଼ ପାଣିରେ ତା'ହେଲେ କେଉଁ ସବୁ ଖାଦ୍ୟ ଉପାଦାନ ରହିଥାଏ ?"

ବାପା କହିଲେ, "ଏହା ଏକ ସମ୍ପୂର୍ଣ୍ଣ ପୁଷ୍ଟିକର ପାନୀୟ । ଏଥିରେ ଲଘୁ ଶର୍କରା ଯଥା– ଗ୍ଲୁକୋଜ୍ ଓ ଫ୍ରୁକ୍‌ଟୋଜ୍ ସହିତ ପୁଷ୍ଟିସାର, ସାମାନ୍ୟ ସ୍ନେହସାର ଏବଂ ପୋଟାସିୟମ୍, ସୋଡ଼ିୟମ୍, କାଲ୍‌ସିୟମ, ଫସ୍‌ଫରସ୍, ଲୌହ, ତମ୍ବା ପରି ଧାତୁସାର ମଧ୍ୟ ରହିଥାଏ । ଏହା ଛଡ଼ା ପାଇଡ଼ ପାଣିରେ ଭିଟାମିନ୍-ସି ଏବଂ ବି-କମ୍ପ୍ଲେକସ୍ ମଧ୍ୟ ରହିଥାଏ, ବହୁପ୍ରକାର ଆମିନୋଏସିଡ୍ ରହିଥାଏ । ଏଥିରେ କ୍ୟାଲୋରୀର ପରିମାଣ ଖୁବ୍ କମ୍ ଥାଏ ।"

ଚନ୍ଦନ ପଚାରିଲା, "ଏବେ କହିଲ ବାପା, କେବଳ

ଶୋଷ ମେଣ୍ଟାଇବା ପାଇଁ ପଇଡ଼ ପାଣିକୁ ପିଆଯାଏ ନା ଏହା ଆମର ଆଉ କିଛି ଦରକାରରେ ଆସେ ?” “ପଇଡ଼ ପାଣି ଆମର ବହୁ ଦରକାରରେ ଆସିଥାଏ । ଏକେ ତ ଏହା ପାଟିକୁ ସୁଆଦିଆ ଲାଗେ, ତା’ ଛଡ଼ା ଏହା ଶରୀରକୁ ଶୀତଳ ରଖିଥାଏ । ତେଣୁ ଖରାଦିନେ ଅନ୍ୟାନ୍ୟ ଥଣ୍ଡା ପାନୀୟ ଅପେକ୍ଷା ଏହା ବେଶୀ ତୃପ୍ତିକର ହେଇଥାଏ ଓ ଅଂଶୁଘାତରୁ ରକ୍ଷାକରିଥାଏ । ଏହା ଖୁବ୍ ସହଜରେ ହଜମ ହୋଇଥାଏ ।” ବାପା କହିଲେ ।

“ପଇଡ଼ ପାଣିରେ କେତେ ଅଭିବୃଦ୍ଧିକାରକ ଉପାଦାନ ରହିଥାଏ । ଏହା ବଢ଼ନ୍ତା ପିଲାଙ୍କର ଶାରୀରିକ ତଥା ମାନସିକ ଅଭିବୃଦ୍ଧିରେ ସାହାଯ୍ୟ କରେ । ବୃଦ୍ଧ ଓ ରୋଗୀମାନଙ୍କ ପାଇଁ ଏହା ଭିଟାମିନ୍ ଟନିକ୍ ଭଳି କାର୍ଯ୍ୟ କରିଥାଏ । ସେଇଥିପାଇଁ ଯେ କୌଣସି ରୋଗରେ ପଇଡ଼ ପାଣି ପିଇବା ପାଇଁ ଡାକ୍ତରମାନେ ପରାମର୍ଶ ଦେଇଥାନ୍ତି । ଜଣ୍ଡିସ୍ ରୋଗରେ ତ ପଇଡ଼ ପାଣି ଅବ୍ୟର୍ଥ ଔଷଧ ଭଳି କାମ କରିଥାଏ । ଏହା କୋଷଗୁଡ଼ିକୁ ସୁରକ୍ଷା ପ୍ରଦାନ କରିଥାଏ ।’’

ଚନ୍ଦନ ପଚାରିଲା, “ଆଚ୍ଛା ! ମୋ ସାଙ୍ଗମାନେ କହନ୍ତି ପଇଡ଼ ପାଣି ପିଇଲେ ପେଟ ଥଣ୍ଡା ରହେ ।” ବାପା କହିଲେ, “ହଁ ସତ । ପଇଡ଼ ପାଣି ଅନ୍ତନାଳୀକୁ ଶାନ୍ତ ରଖେ । ଖାଦ୍ୟ ହଜମରେ ସାହାଯ୍ୟ କରେ । ପେଟର କୃମିମାନଙ୍କୁ ମାରିଦେଇଥାଏ । ପରିସ୍ରାନଳୀ ସଂକ୍ରମଣ ଓ ପରିସ୍ରାପୋଡ଼ା ପାଇଁ ଏହା ଖୁବ୍ ଉପକାରୀ ହୋଇଥାଏ । ନିୟମିତ ପଇଡ଼ ପାଣି ପିଇଲେ ବୃକ୍କ ଓ ମୂତ୍ରନଳୀରେ ପଥର ହେବାର ସମ୍ଭାବନା ରହେନାହିଁ । କୋଷ୍ଠକାଠିନ୍ୟ ମଧ୍ୟ ହୁଏନାହିଁ ।

“ପୁଣି ତରଳ ଝାଡ଼ା, ବାନ୍ତି ଇତ୍ୟାଦି ହୋଇ ଦେହରେ ଜଳଶୁଷ୍କତା ଦେଖାଦେଲେ ଓ.ଆର୍.ଏସ୍ ଦ୍ରବଣ ବଦଳରେ ଯଥେଷ୍ଟ ପଇଡ଼ ପାଣି ପିଇବାକୁ ଦେଲେ ଅନୁରୂପ ଫଳ ମିଳିଥାଏ । ସାଲାଇନ୍ ନ ମିଳିଲେ ଏହି ପାଣିକୁ ଶିରାବାଟେ ଇଂଜେକ୍ସନ୍ ଆକାରରେ ମଧ୍ୟ ଦିଆଯାଇପାରେ । ଦ୍ବିତୀୟ ବିଶ୍ୱଯୁଦ୍ଧ ସମୟରେ ପ୍ରଶାନ୍ତ ମହାସାଗର ଅଞ୍ଚଳରେ ଆଘାତପ୍ରାପ୍ତ ସୈନିକମାନଙ୍କୁ ଜରୁରୀକାଳିନ ପ୍ଲାଜ୍ମା ସଞ୍ଚାରଣ ପାଇଁ ପଇଡ଼ପାଣିକୁ ସିଧା ଶିରା ବାଟେ ଦିଆଯାଉଥିଲା ଏବଂ ଏହା ଖୁବ୍ ଫଳପ୍ରଦ ହେଉଥିଲା । ଏବେ ମଧ୍ୟ ପ୍ଲାଜ୍ମା ନ ମିଳିଲେ ଡାକ୍ତରମାନେ ପଇଡ଼ପାଣିକୁ ସଂଚାରଣ କରିବାକୁ ପରାମର୍ଶ ଦେଉଛନ୍ତି । କାରଣ ଏହା ପ୍ରବାହିତ ରକ୍ତର ତାପମାତ୍ରା ବଢ଼ାଏ ନାହିଁ କିମ୍ବା ଲୋହିତ ରକ୍ତକଣିକାକୁ ନଷ୍ଟ କରି ଦିଏନାହିଁ ।

ପଇଡ଼ ପାଣି ପିଇବା ଦ୍ୱାରା ଆମେ ଖାଉଥିବା କେତେକ ଔଷଧ ଖୁବ୍ ଶୀଘ୍ର ଅବଶୋଷିତ ହୋଇଯାଏ । ଏହା ମାନସିକ ସ୍ଥିରତା ଆଣିଥାଏ । ଏଥିରେ ରହିଥିବା ଲରିକ୍ ଏସିଡ୍ ନାମକ ଏକ ଉପାଦାନ ପେଟ ଭିତରୁ କବକ ଭୂତାଣୁ, ପରଜୀବୀମାନଙ୍କୁ ନାଶ କରିଦେଇଥାଏ ।”

ଏକଥା ଶୁଣି ଚନ୍ଦନ କହିଲା, “ଆରେ ବାଃ, ପଇଡ଼ ପାଣିର ପୁଣି ଏତେ ଗୁଣ ?” ବାପା କହିଲେ, “ଖାଲି ସେତିକି ନୁହେଁ, ମୁଁ ତ ଖାଲି ପଇଡ଼ ପାଣିକୁ ପିଇବା ଦ୍ୱାରା କ’ଣ ଲାଭ ହୁଏ କହିଲି, ଏବେ ଆଉ ଗୋଟିଏ କଥା ଶୁଣ– ପଇଡ଼ପାଣିକୁ ଦେହରେ ଲଗାଇବା ଦ୍ୱାରା ଅଂଶୁଘାତରୁ ରକ୍ଷାମିଳେ । ଘିମିରିର ପ୍ରକୋପ କମିଯାଏ ଓ ଦେହ ଆଉ ପୋଡ଼ାଜଳା କରେନାହିଁ । ଦେହ, ହାତ କୁଣ୍ଡାଇହେବା କମିଯାଏ । ଅଗିଆବାତରୁ ଆରାମ ମିଳେ । ଖରାଦିନେ ବାହାରୁଥିବା ବଥ ହୁଏନାହିଁ । ଓଠଫଟା, କଳଖିଆର ଯନ୍ତ୍ରଣା କମିଯାଏ । ଦେହରେ ହାଡ଼ଫୁଟି, ମିଳିମିଳା କିମ୍ବା ବ୍ରଣ କଳାଖିଲ ଇତ୍ୟାଦିର ଚିହ୍ନ ରହିଲେ ପଇଡ଼ ପାଣି ଲଗାଇବା ଦ୍ୱାରା ତାହା ଆସ୍ତେ ଆସ୍ତେ ଲିଭିଯାଏ ।

ଏହା ବ୍ୟତୀତ ଆୟୁର୍ବେଦିକ୍ ଚିକିତ୍ସକମାନଙ୍କ ମତରେ ପଇଡ଼ ପାଣି ହେଉଛି ଅମୃତ ପରି । ଏହା ବାତ, ପିତ୍ତ ଓ କଫ– ସବୁ ଦୋଷକୁ ଦୂର କରିଥାଏ ।

ଚନ୍ଦନ କହିଲା, "ପଇଡ଼ ପାଣିର ଏତେ ଗୁଣ ବିଷୟରେ ଜାଣିବା ପରେ ସବୁବେଳେ ତ ପଇଡ଼ ପାଣି ପିଇବାକୁ ଇଚ୍ଛା ହେବ । ତା'ହେଲେ ଆମେ ଗୋଟାଏ କାମ କରିବା, ଏକାବେଳକେ ଗୁଡ଼ିଏ ପଇଡ଼ ଆଣି ସେଥିରୁ ପାଣି ବାହାର କରି ତାହାକୁ ବୋତଲରେ ପୂରାଇ ଫ୍ରିଜ୍‌ରେ ରଖିଦେବା ଆଉ ଯେତେବେଳେ ଇଚ୍ଛା ହେବ ପିଇବା ।" ବାପା କହିଲେ, "ନା, ସେଇଟା ଠିକ୍ ନୁହେଁ । ଗଛରୁ ତୋଳା ହେବା ପରେ ପଇଡ଼ ଭିତରେ ରହିଥିବା ପାଣି ବେଶିଦିନ ଯାଏଁ ଭଲ ରହିପାରେ ନାହିଁ । ତେଣୁ ପଇଡ଼କୁ ଗଛରୁ ତୋଳି ସଙ୍ଗେ ସଙ୍ଗେ ଏହାର ପାଣି ପିଇବା ଉଚିତ । ଗଛରୁ ତୋଳା ହେବା ପରେ ପେନ୍ଥା ସହିତ ରହିଲେ ଏହାର ସତେଜତା ଦିନେ ଦୁଇଦିନ ପର୍ଯ୍ୟନ୍ତ ରହିପାରେ; କିନ୍ତୁ ପେନ୍ଥାରୁ କାଟି ଗୋଟା କରିଦେଲେ ଚବିଶରୁ ଛତିଶ ଘଣ୍ଟା ମଧ୍ୟରେଏହାର ସତେଜତା ନଷ୍ଟ ହୋଇଯାଏ ଓ ପଚିଯିବାର ସମ୍ଭାବନା ରହିଥାଏ । ଏହାର ସ୍ୱାଦ, ମହକ ଏପରିକି ପୋଷକମୂଲ୍ୟ ମଧ୍ୟ କମିଯାଏ । ପଇଡ଼ରୁ ପାଣି ବାହାର କରି ଫ୍ରିଜ୍‌ରେ ରଖିଲେ ଅନୁରୂପ ଅବସ୍ଥା ହିଁ ହୋଇଥାଏ । ତେଣୁ ପଇଡ଼ପାଣିକୁ ଫ୍ରିଜ୍‌ରେ ରଖି ପିଇବା ଉଚିତ ନୁହେଁ ।"

"ଆଚ୍ଛା ବାପା ! ମୁଁ ଦେଖିଛି କେତେକ ଲୋକ ପଇଡ଼ ପେନ୍ଥାକୁ ଗଛରୁ ତୋଳି ଅଧିକ ଦିନ ସତେଜ ରଖିବା ପାଇଁ ପାଣିରେ ବୁଡ଼ାଇ ରଖିଥାନ୍ତି । ଏମିତି କରିବା କ'ଣ ଠିକ୍ ?" ଚନ୍ଦନ ପଚାରିଲା । ବାପା କହିଲେ, "ନା, ଆଦୌ ଠିକ୍ ନୁହେଁ । ଏଥିରେ ମଧ୍ୟ ପଇଡ଼ ପାଣିର ସ୍ୱାଦ ଓ ଗୁଣରେ ଫରକ ଆସିଥାଏ ।"

ସବୁ କଥା ଶୁଣି ଚନ୍ଦନ କହିଲା, "ଠିକ୍ ଅଛି, ଆମର ତ ଏତେ ନଡ଼ିଆ ଗଛ ଅଛି, ଏଥର ଗୋଟାଏ କାମ କରିବା, ସବୁଦିନ ତିନିଟି ଲେଖାଏଁ ପଇଡ଼ ତୋଳିବା, ତୁମେ ଗୋଟାଏ ପିଇବ, ମା' ଗୋଟାଏ ପିଇବେ ଆଉ ମୁଁ ଗୋଟାଏ ପିଇବି । ତା'ହେଲେ ଆମ ସମସ୍ତଙ୍କ ଦେହ ଭଲ ରହିବ । ନା କ'ଣ କହୁଛ ?"

ଚନ୍ଦନ କଥା ଶୁଣି ବାପା ଓ ମା' ହସି ଉଠିଲେ । ସେତେବେଳକୁ ସନ୍ଧ୍ୟା ହୋଇଥାଏ । ସମୁଦ୍ର କୂଳ ବୁଲାବୁଲି କରି ସମସ୍ତେ ଘରକୁ ବାହାରିଲେ ।

'ନିମନ୍ତ୍ରଣ', ପ୍ଲଟ୍ ନଂ-୮. ଶକ୍ତିନଗର, ଲିଙ୍କ୍ ରୋଡ୍, କଟକ- ୧୨

---

## ରତନ ଟାଟାଙ୍କର ଲଣ୍ଡନରେ ଦେଇଥିବା ଭାଷଣର କିୟଦଂଶ

✤ ତୁମେ ଯେତେବେଳେ ଜନ୍ମହେଲ, ତୁମକୁ ସମସ୍ତେ ଭଲପାଇଲେ ଏବଂ ତୁମର ଯେତେବେଳେ ମୃତ୍ୟୁ ହେବ ସମସ୍ତେ ଭଲପାଇବେ– ଏ ଦୁଇଟି ମଧ୍ୟରେ ତୁମେ ନିଜକୁ ଚଳେଇବାକୁ ପଡ଼ିବ ।

✤ ତୁମେ ଯେବେ ଚନ୍ଦ୍ରଙ୍କୁ ଦେଖ, ସେତେବେଳେ ଈଶ୍ୱରଙ୍କ ସୌନ୍ଦର୍ଯ୍ୟ ଉପଲବ୍ଧି କର । ଯେତେବେଳେ ସୂର୍ଯ୍ୟଙ୍କୁ ଦେଖ, ସେତେବେଳେ ଈଶ୍ୱରଙ୍କ ଶକ୍ତିକୁ ଦେଖ ଏବଂ ତୁମେ ଯେବେ ଦର୍ପଣଟିଏ ଦେଖ- ଈଶ୍ୱରଙ୍କ ସର୍ବଶ୍ରେଷ୍ଠ ସୃଷ୍ଟିକୁ ଦେଖ । ତେଣୁ ନିଜ ଉପରେ ବିଶ୍ୱାସ ରଖ ।

✤ ଆମେ ସମସ୍ତେ ପରିଭ୍ରମଣକାରୀ ଏବଂ ଈଶ୍ୱର ହେଉଛନ୍ତି ଆମ ପରିଭ୍ରମଣର ଏଜେଣ୍ଟ, ଯିଏକି ଆମର ଗତିପଥ, ସଂରକ୍ଷିତ ସ୍ଥାନ ଏବଂ ଲକ୍ଷ୍ୟସ୍ଥଳ ସ୍ଥିର କରି ରଖିଛନ୍ତି । ତେଣୁ ତାଙ୍କୁ ବିଶ୍ୱାସ କର ଏବଂ ଯାତ୍ରାକୁ ଉପଭୋଗ କର, ଯାହାକୁ 'ଜୀବନ' କୁହାଯାଏ ।





# ଆସ ବ୍ୟାଗ ଧରିବା

ଶ୍ରୀ ଦୁର୍ଗାଚରଣ ନନ୍ଦ

ପରିବା ତାଲିକା ଧରି ଦାସବାବୁ
ବାହାରିପଡ଼ିଲେ ହାଟରେ
ଜେନାବାବୁ ସଙ୍ଗେ ଦେଖା ହୋଇଗଲା
ହାଟକୁ ଯିବାର ବାଟରେ ।
କନା ବ୍ୟାଗଟିଏ ଧରିଥିଲେ ସିଏ
ଦାସେ ଥିଲେ ଖାଲିହାତରେ
ବ୍ୟାଗ୍‌କୁ ବୋହିବା ମୋ ଜାତକେ ନାହିଁ
କହୁଥିଲେ ସିଏ ଚାତରେ ।
ହାଟରେ ପହଁଚି କିଣିଲେ ପିଆଜ
ଆଳୁ, ବାଇଗଣ, ପୋଟଳ
ବଡ଼ିଆ ଟମାଟ ବିକୁଅଛି ଜଣେ
ଲାଗିଅଛି ସେଠି ଗହଳ ।
ଦାସବାବୁ ଯାଇ ମାଗିଲେ କେଜିଏ
ଦୋକାନୀ ଓଜନ କରିଲା
ଦାସେ ପଲିଥିନ ମାଗନ୍ତେ ସେକ୍ଷଣି
ଟମାଟ ଗଦାରେ ଢାଳିଲା ।

'ସବୁ ବିକାଳି ତ ଜରି ରଖିଛନ୍ତି
ତୁମେ କ'ଣ ପାଇଁ ରଖୁନ ?
କାଳୀ ଗାଇପରି ଭିନେଗୋଠ କରି
କାହା ସଙ୍ଗେ କିଆଁ ମିଶୁନ ?'

ଦୋକାନୀ କହିଲା 'ମୂରୁଖ ଲୋକ ମୁଁ
ଶିକ୍ଷିତ ଅଟନ୍ତି ଆପଣ
ଜାଣିନାହାନ୍ତି କି ପିଲିଥିନ୍ ଅଟେ
ପରିବେଶ ନଷ୍ଟ କାରଣ ।

ବ୍ୟାଗ୍ ଆଣିଛନ୍ତି ସବୁକ୍ରେତା ଏକା
ଆପଣ ସେଥିରୁ ବାହାର
କାଳୀଗାଇ କିଏ ଆପଣ ନା ମୁହିଁ
କରନ୍ତୁ ଟିକିଏ ବିଚାର ।'

ଦୋକାନୀର କଥା ଶୁଣି ହସିଦେଲେ
ଥିଲେ ସେଠି ଯେତେ ଗରାଖ
ଦାସବାବୁ ଲାଜେ ବାହୁଡ଼ି ଆସିଲେ
ନ ଦେଖାଇ ବେଶୀ ଚାଲାଖ ।

ତରତରେ ଫେରୁ ପଲିଥିନ୍ ଛିଡ଼ି
ପରିବା ଗଡ଼ିଲା ରାସ୍ତାରେ
ଗୋଟାଇଲେ କିଛି କିଛି ଛାଡ଼ିଦେଇ
ଘରେ ପହଁଚିଲେ ବ୍ୟସ୍ତରେ ।

ଦୋକାନୀର କଥା ତାଙ୍କର ମନରେ
ହେଲା ଖାଲି ପ୍ରତିଧ୍ୱନିତ
'ପଲିଥିନି ଆଉ ଛୁଇଁବିନି' ବୋଲି
କଲେ ଏକ ବଜ୍ର ଶପଥ ।

କ୍ୱା.ନଂ- ଆଇଭିଏ-୪୨/୪, ୟୁନିଟ-୨, ଭୁବନେଶ୍ୱର

---

ଉତ୍ତର- ମହାଭାରତ

# ଶୁଭ ସଂକଳ୍ପ

ଶ୍ରୀ ନବକିଶୋର ପରିଡ଼ା

ଦୈତ୍ୟ ଓ ଦେବତାଙ୍କର ତଥା ଜଗତର କଲ୍ୟାଣ ପାଇଁ ଶିବ ହଳାହଳ ବିଷ ପିଇବା ପାଇଁ ସଂକଳ୍ପ ନେଲେ, ଏକ ଶୁଭ ସଂକଳ୍ପ । ସଂକଳ୍ପ ହେଉଛି ବାଣୀ ଓ ମନ– ଏ ସବୁଠାରୁ ଶ୍ରେଷ୍ଠ । ଛାନ୍ଦୋଗ୍ୟ ଉପନିଷଦରେ ସନତକୁମାରଙ୍କର ନାରଦଙ୍କୁ ଉପଦେଶ ପ୍ରସଙ୍ଗକ୍ରମେ ଏହା କୁହାଯାଇଛି ଯେ– ବାଣୀ ଓ ମନ ଆଦି ସବୁ ସଂକଳ୍ପ ରୂପ, ସଂକଳ୍ପମୟ ଓ ସଂକଳ୍ପରେ ହିଁ ସ୍ଥିତ । ଜଳ ଓ ତେଜ ସଂକଳ୍ପ କରିବା ବ୍ୟକ୍ତି ଯୋଗ୍ୟ ଅଟନ୍ତି । ଏମାନଙ୍କ ସଂକଳ୍ପରୁ ବୃଷ୍ଟି ସମର୍ଥ ହୁଏ । ବୃଷ୍ଟି ସଂକଳ୍ପରୁ ଅନ୍ନ ସମର୍ଥ ହୁଅନ୍ତି । ଅନ୍ନ ସଂକଳ୍ପରୁ ପ୍ରାଣ ସମର୍ଥ ହୁଅନ୍ତି, ପ୍ରାଣ ସଂକଳ୍ପରୁ ମନ୍ତ୍ର ସମର୍ଥ ହୁଏ । ମନ୍ତ୍ର ସଂକଳ୍ପରୁ କର୍ମ ସମର୍ଥ ହୁଏ, କର୍ମ ସଂକଳ୍ପରୁ ଫଳ ସମର୍ଥ ହୁଏ । ଫଳ ସଂକଳ୍ପରୁ ସମସ୍ତ ଜଗତ ସମର୍ଥ ହୁଏ ।

ଏହି ପ୍ରକାରେ ସଂକଳ୍ପ ଶ୍ରେଷ୍ଠ ଅଟେ । ତେଣୁ ତୁମେ ସଂକଳ୍ପର ଉପାସନା କର । ଶୁଭ ସଂକଳ୍ପରେ ହିଁ ସମସ୍ତ ଶକ୍ତି ଓ ସାମର୍ଥ୍ୟ ନିହିତ । ଜଗତକଲ୍ୟାଣ ପାଇଁ ବିଷପାନ କରିବାରେ ଶୁଭ ସଂକଳ୍ପ ହିଁ ଭଗବାନ ଶଙ୍କରଙ୍କୁ ବିଷ ପାନ ପୂର୍ବକ ତା'ର ଜ୍ୱାଳା ସହ୍ୟ କରିବାର ଶକ୍ତି ଦେବା ସଙ୍ଗେ ସଙ୍ଗେ ତାଙ୍କୁ ବିଷକଣ୍ଠ ବା ନୀଳକଣ୍ଠ ରୂପେ ଜଗତବିଦିତ କରାଇପାରିଲା ।

ସେହି ଶଙ୍କର ଭଗବାନଙ୍କର ଏକ ଅଶୁଭ ସଂକଳ୍ପ ବା ବାସନା କିପରି ତାଙ୍କୁ ଶକ୍ତିହୀନ ଓ ଶ୍ରୀହୀନ କରିଦେଇଥିଲା, ସେ ବିଷୟରେ ପୌରାଣିକ ଉପାଖ୍ୟାନଟିଏ । ଦେବୀ ମନସା ପାତାଳର ନାଗରାଜ ବାସୁକୀଙ୍କ ଗୃହରେ ଜନ୍ମନେଲେ । ଋଷି କଶ୍ୟପଙ୍କ ଠାରୁ ପିତୃ ପରିଚୟ ଜାଣି ସେ ଶିବଙ୍କ ନିକଟରେ ଉପସ୍ଥିତ ହେଲେ । ନିଜକୁ ଶିବଙ୍କର କନ୍ୟାରୂପେ ପରିଚୟ ଦେଲେ ମଧ୍ୟ ଶିବ ସହଜରେ ତାଙ୍କୁ ସ୍ୱୀକାର ନ କରି ବରଂ ତାଙ୍କ ରୂପଶୋଭାରେ ମୁଗ୍ଧ ହୋଇ ପତ୍ନୀ ରୂପେ ପାଇବାକୁ ପ୍ରସ୍ତାବଦେଲେ । ନାରୀର ରୂପରେ ଆକର୍ଷିତ ହୋଇ ଦେବ ଦେବ ମହାଦେବଙ୍କ ଚିତ୍ତରେ ମଧ୍ୟ ଏକ ଅଶୁଭ ସଂକଳ୍ପ ଜାତହେଲା । ନାରୀ ରୂପରେ ଆକର୍ଷିତ, ମୋହିତ ହେଲେ ପୁରୁଷ ମାୟାଗ୍ରସ୍ତ ହୁଏ, କାରଣ ମାୟାର ସର୍ବଶ୍ରେଷ୍ଠ ଶକ୍ତି ହେଉଛି ନାରୀ । ରମଣୀ ବିଷ ଅମୃତତୁଲ୍ୟ ଜ୍ଞାନ ହୁଏ । ଜଗଦ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟ ସେଥିପାଇଁ ଯଥାର୍ଥରେ କହିଛନ୍ତି–

**"କିଂତଦ୍ ବିଷୟାଦି ସୁଧୋପମଂ ସ୍ତ୍ରୀ ।"**

ଅର୍ଥାତ୍ କେଉଁ ବିଷ ଅମୃତତୁଲ୍ୟ ହୁଏ, ରମଣୀ । ତେଣୁ ନାରୀକୁ ରମଣୀ ରୂପେ ନୁହେଁ, ମାତା, ଭଗିନୀ, କନ୍ୟା ରୂପେ ଦେଖିବା ପାଇଁ ନିର୍ଦ୍ଦେଶ ଦିଅନ୍ତି । ଅବଶ୍ୟ ନିଜ ସ୍ତ୍ରୀକୁ ସମୟ ଅନୁସାରେ ରମଣୀ ରୂପେ ଦେଖାଯାଇପାରେ । ଆଜିକାଲି ସମାଜରେ ବଳାତ୍କାର,

ନାରୀଧର୍ଷଣ ଇତ୍ୟାଦି ନାରୀ ଜାତି ପ୍ରତି ଅନ୍ୟାୟ, ଅତ୍ୟାଚାର ବୃଦ୍ଧି ପାଇଥିବା କାରଣ ମଧ୍ୟରୁ ଏକ ଗର୍ହିତ କାରଣ ହେଲା ପୁରୁଷମାନେ ତାଙ୍କୁ ଯଥାକ୍ରମେ ମାତା, ଭଗିନୀ, କନ୍ୟା ରୂପେ ନ ଦେଖି ରମଣୀ ରୂପରେ ଦେଖିବାର କାମନା । ଦୃଷ୍ଟିଭଙ୍ଗୀ ବଦଳିପାରିଲେ ଏ ସବୁ ସମସ୍ୟାର ସମାଧାନ ଆପେ ଆପେ ହୋଇଯାଆନ୍ତା । ସେଥିପାଇଁ ନୈତିକ ଶିକ୍ଷା ଓ ସଚେତନତା ଲୋଡ଼ା ।

ଶିବ କହିଲେ– ଗଙ୍ଗା ଓ ପାର୍ବତୀ ମୋର ପତ୍ନୀ । ତୁମେ ମୋ ତୃତୀୟ ପତ୍ନୀ ରୂପେ ସାନ୍ନିଧ୍ୟ ଲାଭ କରି ସୁଖୀ ହୁଅ । ପିତାଙ୍କ ମୁଖରୁ ଏପରି ଅସଙ୍ଗତ କଥା ଶୁଣି ମନସାଦେବୀ ଯେତିକି ଲଜ୍ଜିତ ହେଲେ, ସେତିକି କ୍ରୋଧିତ ମଧ୍ୟ ହୋଇଗଲେ । ନାଗକନ୍ୟା ନିଜକୁ ରକ୍ଷା କରିବା ପାଇଁ ବିଷ ଦୃଷ୍ଟିରେ ଶିବଙ୍କୁ ଚାହିଁଦେବାରୁ ଶିବ ବିଷଜର୍ଜରିତ ହୋଇ ଟଳିପଡ଼ିଲେ । ଜଗତ କଲ୍ୟାଣରୂପୀ ଏ ଶୁଭ ସଂକଳ୍ପ ନେଇ ଯେଉଁ ଶିବ ସମୁଦ୍ର ମନ୍ଥନରୁ ଉତ୍ପନ୍ନ ହଳାହଳ ବିଷକୁ ଏକାଗ୍ରାସକେ ପାନ କରିଦେଇ ଦେବତାମାନଙ୍କର ଦେବ ମହାଦେବ ଭାବରେ ଜଗତ ପୂଜିତ ହୋଇଥିଲେ, ସେ ଏକ ନାରୀର ଶୋଭାରେ ଆକର୍ଷିତ ହୋଇ ତାଙ୍କୁ ନିଜ ସ୍ତ୍ରୀ ରୂପେ ପାଇବାର ପ୍ରସ୍ତାବ ଦେବା ପରି ଏକ ଅଶୁଭ ସଂକଳ୍ପ ଯୋଗୁଁ ନାଗକନ୍ୟାର ବିଷଦୃଷ୍ଟିକୁ ମଧ୍ୟ ସହ୍ୟ କରିପାରିଲେ ନାହିଁ ।

ଦେବୀଙ୍କ ବିଷ ପ୍ରଭାବରେ ଶିବ ନିସ୍ତେଜ ହୋଇଗଲେ, ଶକ୍ତିହୀନ, ଶ୍ରୀହୀନ ହୋଇଗଲେ । ଏ ଦାରୁଣ ସମ୍ବାଦରେ ଦେବଗଣ ଅତ୍ୟନ୍ତ ମର୍ମାହତ ହୋଇ ଦେବୀ ମନସାଙ୍କୁ ବୁଝାଇ କହିଲେ– ହେ ଦେବୀ ଜନ୍ମରୁ ତୁମେ ପିତାଙ୍କୁ ବଧ କଲ । ଦେବକୁଳରେ ତୁମର ସ୍ଥାନ ନାହିଁ । ତୁମର କେହି ଭକ୍ତଗଣ ମଧ୍ୟ ନାହାନ୍ତି, ଅଥଚ ଏତେ ଗର୍ବ, ଅହଙ୍କାର ତୁମ ଭିତରେ ଭରିରହିଛି । ଶିବ ଚେତନାହୀନ ହେଲେ ଜଗତ ରୁଦ୍ଧ ହୋଇଯିବ । ଏଣୁ ବିଷହରଣ କରି ତାଙ୍କୁ ଜୀବନଦାନ କର ।

ଦେବତାମାନଙ୍କ କଥାରେ ମନସା ଦୁଃଖିତା ହେଲେ । ସତରେ ପିତୃଘାତିନୀ ଭାବରେ ସେ ଦେବସମାଜରେ ଅପୂଜ୍ୟା ରହିଯିବେ । ଦୁଃଖିନୀ ମନସାଙ୍କୁ ଦେଖି ପ୍ରଜାପତି ବ୍ରହ୍ମା ତାଙ୍କୁ ଆଶ୍ୱାସନା ଦେଇ କହିଲେ, "ତୁମେ ପିତାଙ୍କୁ ଜୀବନଦାନ କରି ଦେବକୁଳର ରକ୍ଷା କର ।" ପିତାଙ୍କ ମୁଖରୁ ଅସଙ୍ଗତ, ଅଶାସ୍ତ୍ରୀୟ କଥା ଶୁଣିଲେ କନ୍ୟା ମନରେ କେତେ ଦୁଃଖ ହୁଏ, ବୋଧହୁଏ ପିତାମହ ବ୍ରହ୍ମା ଜାଣିପାରିଲେ ନାହିଁ । ଏହା ଭାବି ମନସା ଆହୁରି କ୍ରୋଧିତ ହୋଇଗଲେ । ଦୁଃଖୀର ଦୁଃଖ ପୀଡ଼ାକୁ ନ ବୁଝି କେବଳ ଉପଦେଶ ଦେଲେ ତାହା ତା ମନରେ କ୍ରୋଧ ଜାତ କରାଏ । କାରଣ ଦୁଃଖୀ, ଉତ୍ପୀଡ଼ିତର ଭଲମନ୍ଦ ଜ୍ଞାନ ନ ଥାଏ । ଅଭିମାନିନୀ ମନସା କହିଲେ, "ଯାହାର କାଳ ପୂର୍ଣ୍ଣ ହୁଏ, ସେତେବେଳେ ଚାଲିଯାଏ, ଏଥିରେ କାହାର କିଛି କରିବାର ନାହିଁ ।''

ମନସାଙ୍କ କଥା ଶୁଣି ବ୍ରହ୍ମା କହିଲେ– "ଦେବୀ ରାଗ ନାହିଁ । ଦେବତାଙ୍କୁ ନେଇ ଅନେକ ଅଘଟଣ ଘଟେ । କିଏ ସଂସାରରେ ନିର୍ଦ୍ଦୋଷ କୁହ ? ଏଥିଲାଗି ତୁମେ ପିତୃହନ୍ତା ଅଯଶ ଅର୍ଜିବ କାହିଁକି ?" ବ୍ରହ୍ମାଙ୍କ କଥାରେ ଦେବୀ ମନସା ଶାନ୍ତ ହୋଇ ଗଣ୍ଡକୀ ନଦୀର ଜଳ ନେଇ ଅମୃତ କୁମ୍ଭରେ ଭରି ଶିବଙ୍କ ଉପରେ ସିଞ୍ଚନ କରିବାରୁ ଶିବ ପ୍ରାଣ ଫେରିପାଇଲେ । ଶିବଙ୍କୁ ସୁସ୍ଥ ହେବା ଦେଖି ବ୍ରହ୍ମା ତାଙ୍କୁ କହିଲେ, ''ହେ ଦେବାଧିଦେବ ! ତୁମେ ଦେବୀମନସାଙ୍କୁ ଅବିଶ୍ୱାସ କରନାହିଁ । ସେ ସତରେ ତୁମର କନ୍ୟା । ଆମେ ଦେବକୁଳ ହେଉଛୁ ତାଙ୍କ ଜନ୍ମର ସାକ୍ଷୀ । ତୁମେ ତାଙ୍କୁ କନ୍ୟା ରୂପେ ସ୍ୱୀକୃତି ଦିଅ ।"

ବ୍ରହ୍ମାଙ୍କ କଥାରେ ଶିବ ମନସାଙ୍କୁ କନ୍ୟା ରୂପେ

# ମାମା ଓ ମିତାଲି

ଶ୍ରୀମତୀ ଶୈଳବାଳା ରାଉତ

ସବୁଦିନ ପରି ଆଜି ମିତାଲିର ସ୍କୁଲ ଫେରିବା ବାଟକୁ ମାଆ ଚାହିଁ ବସିଥାନ୍ତି । କଳାହାଣ୍ଡିଆ ମେଘ ଘୋଟି ରହିଛି । ହେଇ ଯେମିତି ବରଷିଯିବ; ଏଥିପାଇଁ ମାଆଙ୍କ ମନରେ ଭୟ । ପୁଣି ପିଲାଟା ଟିକିଏ ଚଗଲୀ, ଟିକିଏ ଦୁଷ୍ଟ । ପାଣିରେ ଭିଜି ଭିଜି ଘରକୁ ଫେରିବ । କାଦୁଅରେ ଲଟପଟ ହୋଇ ଜୋତା, ଜାମା ଅପରିଷ୍କାର କରିବ । ଏ ସବୁ କଥା ବି ମାଆ ଭାବି ହେଉଥାନ୍ତି ।

ଠିକ୍ ସେତିକିବେଳେ କବାଟରେ ଖଟ୍ ଖଟ୍ ଶବ୍ଦ । ମିତାଲି ଆସି ଘରେ ପହଞ୍ଚିଗଲା । ମା' କହିଲେ– ଯାହାହେଉ ପିଲାଟା ବର୍ଷା ପୂର୍ବରୁ ଘରେ ଆସି ପହଞ୍ଚିଯାଇଛି । ଆଉ ବିଳମ୍ବ ନ କରି ତାକୁ ଖୁଆଇପିଆଇ ଶୋଇବାର ବ୍ୟବସ୍ଥା କରୁଥାନ୍ତି ମା'; କିନ୍ତୁ ମିତାଲିର ଲକ୍ଷ୍ୟ ଟି.ଭି ଉପରେ ।

ଲାଇନ୍ ତ ନାହିଁ । ସେ କେମିତି କାର୍ଟୁନ୍ ଦେଖିବ ? ପାଟି, ଗଣ୍ଡଗୋଳ, କାନ୍ଦରେ ଲାଗିପଡ଼ିଲା । କେତେ କ'ଣ ମା'ଙ୍କ ସହ ଯୁକ୍ତି– "ଏ ଝଡ଼ତୋଫାନ୍ କାହିଁକି ହେଉଛି ? ମୁଁ ଘରେ ବସି କ'ଣ କରିବି ? ବାହାରକୁ ତ ବର୍ଷା ଯୋଗୁଁ ଖେଳିବାକୁ ଯାଇପାରିବି ନାହିଁ ।" ଏମିତି କେତେ କ'ଣ ।

ମା' ଅଝଟିଆ ମିତାଲିକୁ କୋଳକୁ ଟେକିନେଲେ । କହିଲେ, "ମା'ରେ ମୁଁ ତୋତେ ଗୋଟିଏ ଭଲ କଥାଟିଏ କହୁଛି ଶୁଣ । ଏ ଯେଉଁ ବର୍ଷା ହେଉଛି ନା, ଆମେ ସବୁ ତାକୁ ଖୁସି ମନରେ ସ୍ୱାଗତ କରିବା ଉଚିତ । କାହିଁକି ଜାଣିଛୁ ? ଏ ହେଉଛି ଆମ ପ୍ରକୃତିର ନିୟମ । ତୁ ତ ଛଅଟି ଋତୁ ବିଷୟରେ ତୋ ବହିରେ ପଢ଼ିଛୁ । ତେଣୁ ଛଅଟିଯାକ ଋତୁ ତାଙ୍କ ଋତୁଚକ୍ର ଅନୁଯାୟୀ କାମ କରି ଚାଲିଥାନ୍ତି । ଗ୍ରୀଷ୍ମଋତୁ ଆସିଲେ ଯାଇ ବର୍ଷାଋତୁ ଆସିବ । ପୁଣି ତା'ପରେ ଶୀତ, ବସନ୍ତ । ଏମିତି ପ୍ରକୃତିର ନିୟମ ଅନୁସାରେ ସେମାନେ ଚାଲିଥାନ୍ତି । ସେମାନଙ୍କୁ କ'ଣ ଆମେ ରୋକିପାରିବା ?"

"ଆହୁରି ମଧ୍ୟ ତୋ ପରି କଅଁଳିଆ ପିଲାମାନେ ଆମ ପ୍ରକୃତିରୁ ବହୁତ କଥା ଶିକ୍ଷା କରନ୍ତି । ତେଣୁ ସେ ହେଉଛି ତୁମ୍ଭମାନଙ୍କ ପାଇଁ ଉତ୍ତମ ଶିକ୍ଷକ ।" ତେଣୁ କହୁଛି ଶୁଣ୍–

ତୁ ସକାଳେ ସୂର୍ଯ୍ୟଙ୍କୁ ଉଦୟ ହେବାର ଦେଖୁଛୁ । ସୂର୍ଯ୍ୟଙ୍କ କିରଣରେ ଚାରିଆଡ଼େ ଆଲୁଅ ହୋଇଯାଏ, ତେଣୁ ସୂର୍ଯ୍ୟ ତୁମକୁ କହେ– ପିଲାଏ ଚାରିଆଡ଼େ ଆଲୁଅ ହୋଇଗଲାଣି । ଶେଯ ଛାଡ଼ ।

---

ସ୍ୱୀକୃତି ଦେଲେ । ସେ ଯୋଗୀଶ୍ୱର, ସେ କ'ଣ ଜାଣି ନ ଥିଲେ ଯେ ଦେବୀ ମନସା ତାଙ୍କର କନ୍ୟା ? ଏକ ଅଶୁଭ ସଂକଳ୍ପରୁ କିପରି ଶିବଙ୍କ ପରି ମହାଯୋଗୀ ମଧ୍ୟ ଶକ୍ତିହୀନ ଓ ଶ୍ରୀହୀନ ହୋଇଯାଆନ୍ତି ଜଗତକୁ ଏକ ଶିକ୍ଷା ଦେବା ପାଇଁ, ଏହା ଥିଲା ତାଙ୍କର ଏକ ଲୀଳାମାତ୍ର । ତେଣୁ ଆସନ୍ତୁ ଅଶୁଭ ସଂକଳ୍ପ, ଅଶୁଭ କାମନାବାସନା ସବୁ ମନରୁ ଦୂରେଇଦେଇ ଶୁଭ ସଂକଳ୍ପରେ ଶକ୍ତି ଆହରଣ କରିବା ।

ବଡ଼ଡେରା, ମଣ୍ଡୁଆ, କେନ୍ଦୁଝର-୭୫୮୦୧୪

ପୁଣି ତୁ ଜାଣିଛୁ– ଶୀତ ଦିନେ ଥଣ୍ଡା ପବନ ବହେ । ସୁଲୁସୁଲିଆ ପବନରେ ଦେହ ଥରିଯାଏ । ତେଣୁ ସୁଲୁସୁଲିଆ ଧୀର ଥଣ୍ଡା ପବନ ତୁମକୁ କହେ– ମିଷ୍ଟଭାଷୀ ହୁଅ । ସଭିଙ୍କୁ ଉତ୍ତମ ବ୍ୟବହାର କର ।

ବର୍ଷା ଦିନେ ଛୋଟ ଛୋଟ ଜଳକଣା ତୁମ କାନ ପାଖେ ଚୁପ୍ ଚୁପ୍ କହେ– ତୁମ୍ଭେ ମୋର ପରି ମିଳିମିଶି ଚଳ । ଦେଖୁନ ଆମେ କିପରି ଛୋଟ ଛୋଟ ସବୁ ମିଶି ବଡ଼କଣାଟିଏ ହୋଇ ବର୍ଷିଯାଉଛୁ ।

ପୁଣି ଯେତେବେଳେ ବସନ୍ତଋତୁ ଆସେ, ସେତେବେଳେ ପ୍ରକୃତି ପୂରାପୂରି ଶାନ୍ତ । ଜଳ, ସ୍ଥଳ, ଆକାଶ ସବୁ ନିର୍ମଳ । ତେଣୁ ସେ କହେ– ପିଲାଏ ମୋ ପରି ଶାନ୍ତ, ସହନଶୀଳ ହୁଅ । ଆସୁ ଯେତେ ବିପଦ, ବାଧାବିଘ୍ନ ସବୁକୁ ପଛରେ ରଖି ଆଗକୁ ବୀର ଭଳି ମାଡ଼ିଚାଲ । ନିଶ୍ଚୟ ଜୀବନରେ ଉନ୍ନତି ଆସିବ ।

ନୀଳ ଆକାଶକୁ ତୁମ୍ଭେମାନେ ଯେତେବେଳେ ଚାହଁ, ସେ ପାଟି କରି କହେ– ପିଲାଏ, ତୁମ୍ଭେମାନେ ମୋ ପରି ବିଶାଳ ହୁଅ । ନିଜର ଯଶ, ଖ୍ୟାତି, ସୁନାମ, ପ୍ରତିଷ୍ଠା, ଗୌରବକୁ ଦୁନିଆ ଆଗରେ ପରିପ୍ରକାଶ କର, ତେବେ ଯାଇ ତୁମ୍ଭେମାନେ ସଂସାରରେ ବଡ଼ମଣିଷ ହେବ ।

ଛଳଛଳ ହୋଇ ଚାଲିଥିବା ନଦୀଟିଏ ପାଖକୁ ତୁମେମାନେ ଯାଅ । ସେଇଠି ଠିଆ ହେଲେ ତୁମେମାନେ ନିଶ୍ଚୟ ଅନୁଭବ କରିବ ସେ କହୁଛି– ପିଲାଏ ଆଗକୁ ମାଡ଼ିଚାଲ । ସଫଳତା ନିଶ୍ଚୟ ତୁମମାନଙ୍କର ପାଦ ଛୁଇଁବ ।

ପକ୍ଷୀଟିଏ ପାଖକୁ ତୁମେମାନେ ଯଦି ଯାଅ, ସିଏ ବି ତୁମ୍ଭମାନଙ୍କୁ କହିବ– ପିଲାଏ ତୁମ୍ଭେମାନେ ମୋ ପରି ସହନଶୀଳ ହୋଇ ସଭିଙ୍କର ଉପକାର କର । କେବେହେଲେ ତା'ଠାରୁ ପ୍ରତିବଦଳରେ କିଛି ଆଶା କରନାହିଁ ।

ଜଳିଚାଲିଥିବା ଦୀପ ଶିଖାଟିଏ ତୁମକୁ କହେ– ପିଲାଏ ଜୀବନର ଅନ୍ଧକାର ପଥକୁ ଦୂର କରି ଆଲୋକ ପଥକୁ ମାଡ଼ି ଚାଲ ।

ତେଣୁ ମିତାଲି ତୁ ମୋ ପାଖରୁ ଯାହାସବୁ ଶୁଣିଲୁ, ସେସବୁର ସୃଷ୍ଟିକର୍ତ୍ତା କିଏ ଜାଣିଛୁ ? ସେ ହେଉଛନ୍ତି ପ୍ରଭୁ ପରମେଶ୍ୱର । ତାଙ୍କର ଏ ସୃଷ୍ଟିକୁ ଆମେ ସ୍ୱାଗତ କରିବା । ଆଉ ତାଙ୍କ ଗତିପଥରେ ବାଧା ସୃଷ୍ଟି ନ କରି ତାଙ୍କର ସୁରକ୍ଷା କରିବା । ତା'ହେଲେ ଯାଇ ଆମେ ଭଲରେ ରହିବା ଏବଂ ଆମ ପରବେଶ ସୁସ୍ଥ ଓ ସୁନ୍ଦର ହେବ ।"

ମା'ଙ୍କର ଏତେ ଉପଦେଶ, ଏତେଗୁଡ଼ିଏ କଥା ଛୋଟ ମିତାଲି ମନରେ କିଛିଟା ପ୍ରଭାବ ପକାଇଲା ସତ; କିନ୍ତୁ ତା'ର ସେଇ ଅଝଟିଆ ମନଟା ଟି.ଭି. ପରଦା ଉପରେ ଲାଖି ରହିଥିଲା । ମନେ ମନେ ଭାବୁଥାଏ– "ଏ ବର୍ଷା, ଝଡ଼ତୋଫାନଟା କେତେବେଳେ କମିବ ଏବଂ ଲାଇନ୍ ଆସିଲେ ସେ ଟି.ଭି. ଦେଖିବ ।"

ମା' ମିତାଲିର ମନକଥା ବେଶ୍ ବୁଝିପାରୁଥାନ୍ତି । ମନେ ମନେ ଜାଣୁଥାନ୍ତି– "ଅଝଟିଆଟା କିଛି ବୁଝୁ ନ ବୁଝୁ କିଛି ସମୟ ତ ନୀରବରେ ତା'ର କଟିଗଲା । ଏବେ ଲାଇନ୍ ଆସିବ । ଟି.ଭି. ଦେଖିବ । ମୁଁ ମୋ କାମରେ ଲାଗିପଡ଼ିବି ।"

ସେତିକିବେଳେ ଟି.ଭି. ଘରୁ ମିତାଲିର ସ୍ୱର ଶୁଭୁଥିଲା– 'ମା' ଲାଇନ୍ ଆସିଗଲା ! ମା' ହସି ହସି ମିତାଲି ପାଖକୁ ଦଉଡ଼ିଗଲେ ତା' ମିଠା ମିଠା ହସ ଦେଖିବା ପାଇଁ ।

ମାର୍ଫତ୍– ଡ. ଫିଲପସ୍ ରାଉତରାୟ, ଡକ୍ଟର ମୋହନ ଡାଇବେଟିକ୍ ହସ୍ପିଟାଲ, କ୍ରିସେଣ୍ଟ ଟାୱାର–୩ୟ ମହଲା, ପ୍ଲଟ୍ ନଂ.–୪୭୬/ ୪୭୭, ବମିଖାଲ, ଭୁବନେଶ୍ୱର–୭୫୧୦୧୦

# ପୃଥିବୀବିଖ୍ୟାତ ଭାରତୀୟ ଗଣିତଜ୍ଞ

ଶ୍ରୀ ଗିରୀଶ ଚନ୍ଦ୍ର ତ୍ରିପାଠୀ

ଧରାପୃଷ୍ଠରେ ଅନେକ ଲୋକ ଜନ୍ମଗ୍ରହଣ କରନ୍ତି; କିନ୍ତୁ ସମସ୍ତଙ୍କୁ ଲୋକେ ମନେରଖନ୍ତି ନାହିଁ । ସେହିମାନେ ଆମର ପ୍ରାତଃସ୍ମରଣୀୟ ହୋଇ ରହନ୍ତି, ଯେଉଁମାନେ ସେମାନଙ୍କର ତନମନ ଜଗତ ପାଇଁ ଉତ୍ସର୍ଗ କରିଥା'ନ୍ତି । ସେହିଭଳି ଜଣେ ଅସାଧାରଣ ବ୍ୟକ୍ତିତ୍ୱ ହେଲେ ପୃଥିବୀବିଖ୍ୟାତ ମହାନ୍ ଭାରତୀୟ ଗଣିତଜ୍ଞ ଶ୍ରୀନିବାସ ରାମାନୁଜନ୍ ।

ସେ ଜନ୍ମଗ୍ରହଣ କରିଥିଲେ ତାମିଲନାଡୁର ଇରୋଡ୍ ସହରରେ ୧୮୮୭ ମସିହାରେ । ତାଙ୍କ ମାତାଙ୍କ ନାମ ଥିଲା କୋମଳତମ୍ମାଲ ଏବଂ ପିତାଙ୍କ ନାମ ଥିଲା ଶ୍ରୀନିବାସ ଆୟାଙ୍ଗାର । ତାଙ୍କ ପିତା କୁମ୍ଭକୋଣମ୍‌ର ଏକ ପାଟ ବ୍ୟବସାୟୀଙ୍କ ପାଖରେ ମାସିକ ୨୦ ଟଙ୍କାରେ ଗୁମାସ୍ତା କାମ କରୁଥିଲେ । ମା' ତାଙ୍କର ଏକ ମନ୍ଦିରରେ ଭଜନ ଗାୟିକା ଭାବେ ସ୍ୱଳ୍ପ କିଛି ଅର୍ଥ ଉପାର୍ଜନ କରୁଥିଲେ ।



ପରିବାରର ଇଷ୍ଟଦେବୀ ନାମଗିରିଙ୍କର ସେ ଉପାସିକା ଥିଲେ । ମନ୍ଦିରକୁ ଯାଇ ଭକ୍ତି ସଙ୍ଗୀତ ଗାଇବା, ହାତ ଦେଖି ଭବିଷ୍ୟତ ଗଣନା କରିବା, ମହାଭାରତ ଓ ରାମାୟଣର କାହାଣୀମାନ କହିବା ଇତ୍ୟାଦି ଗୁଣଯୋଗୁଁ ତାଙ୍କୁ ସମସ୍ତେ ଭଲପାଉଥିଲେ । ତାଙ୍କର ଏହିସବୁ ସଦ୍‌ଗୁଣର ପ୍ରଭାବ ରାମାନୁଜନ୍‌ଙ୍କ ଉପରେ ପଡ଼ିଥିଲା । ତାମିଲନାଡୁର ତାଞ୍ଜିଭୁରୁ ଜିଲ୍ଲାର କୁମ୍ଭକୋଣମ୍ ସହରରେ ରାମାନୁଜନ୍‌ଙ୍କ ଶୈଶବ କଟିଥିଲା ।

୧୦ ବର୍ଷ ବୟସରେ ଭୂଗୋଳ, ତାମିଲ, ଗଣିତ ଓ ଇଂରେଜୀ ବିଷୟର ପରୀକ୍ଷାରେ ସେ ସମଗ୍ର ତାଞ୍ଜୋର ଜିଲ୍ଲାର ଛାତ୍ରମାନଙ୍କ ମଧ୍ୟରେ ଶୀର୍ଷସ୍ଥାନରେ ରହିଥିଲେ । ସେ ଟାଉନ୍ ହାଇସ୍କୁଲରେ ୬ ବର୍ଷ କାଳ ପଢ଼ିଥିଲେ । ସପ୍ତମ ଶ୍ରେଣୀରେ ତାଙ୍କର ଗାଣିତିକ ପ୍ରତିଭାର ପରିଚୟ ମିଳିଥିଲା । ଗଣିତ ବିଷୟରେ ବିଭିନ୍ନ ଜଟିଳ ପ୍ରଶ୍ନର ସମାଧାନ ପାଇଁ କେବଳ ଛାତ୍ର ନୁହଁନ୍ତି, ଶିକ୍ଷକମାନେ ମଧ୍ୟ ତାଙ୍କର ସାହାଯ୍ୟ ନେଉଥିଲେ ।

ଶ୍ରେଣୀଗୃହରେ ଶିକ୍ଷାଦାନ ଚାଲିଥିବା ବେଳର ଏକ ଘଟଣା-- ଗଣିତଶିକ୍ଷକ ରାମାନୁଜନ୍ ପଢୁଥିବା ଶ୍ରେଣୀରେ ଗଣିତ ପଢ଼ାଉଥା'ନ୍ତି । ଶିକ୍ଷକ କୌଣସି ସଂଖ୍ୟାକୁ ସେହି ସଂଖ୍ୟାଦ୍ୱାରା ଭାଗକଲେ ଭାଗଫଳ ୧ ହେବ, ଏହାର ଅନେକଗୁଡ଼ିଏ ଉଦାହରଣ ଦେଇ ବୁଝାଉଥାନ୍ତି । ଏହି ସମୟରେ ହଠାତ୍ ରାମାନୁଜନ୍ ଠିଆହୋଇ ଶିକ୍ଷକଙ୍କୁ ପଚାରିଲେ, "ଗୁରୁଜୀ, '୦' କୁ '୦' ଦ୍ୱାରା ଭାଗକଲେ, ଭାଗଫଳ ୧ ହେବ? ଏହି ଘଟଣାରୁ ରାମାନୁଜନ୍‌ଙ୍କର ଗାଣିତିକ ପ୍ରତିଭାର ପରିଚୟ ମିଳିଥିଲା । ବାସ୍ତବିକ କୌଣସି ସଂଖ୍ୟାକୁ '୦' ଦ୍ୱାରା ଭାଗ କରାଯାଇପାରେ ନାହିଁ । କଲେଜରେ ପଢ଼ାଯାଉଥିବା ଗଣିତର ଅନେକ ବିଷୟ ସେ ବିଦ୍ୟାଳୟ ସ୍ତରରେ ହିଁ ଆୟତ୍ତ କରିନେଇଥିଲେ ।

π ଓ ୧ ପରି ଅପରିମେୟ ସଂଖ୍ୟାଗୁଡ଼ିକର ମୂଲ୍ୟ ବହୁ ଦଶମିକ ସ୍ଥାନ ପର୍ଯ୍ୟନ୍ତ ସେ କହିପାରୁଥିଲେ । ୧୯୦୪ ମସିହାରେ ରାମାନୁଜନ୍‌ଙ୍କୁ ଗଣିତରେ କେ. ରଙ୍ଗନାଥ ରାଓ ପୁରସ୍କାର ଦେଲାବେଳେ ବିଦ୍ୟାଳୟର ପ୍ରଧାନଶିକ୍ଷକ ମନ୍ତବ୍ୟ ଦେଇଥିଲେ ଯେ ୧୦୦ରୁ ୧୦୦

ନମ୍ବର ଦେଇ ରାମାନୁଜନ୍‌ଙ୍କ ପ୍ରତିଭାର ସଠିକ୍ କଳନା କରିବା ସମ୍ଭବ ନୁହେଁ । ରାମାନୁଜନ୍ ସଂଖ୍ୟାଗୁଡ଼ିକୁ ନେଇ ଖେଳ ଖେଳିବାକୁ ଭଲପାଉଥିଲେ । ୧ରୁ ୧ କୋଟି ମଧ୍ୟରେ ଥିବା ମୌଳିକ ସଂଖ୍ୟାଗୁଡ଼ିକ ତାଙ୍କ ଜିଭ ଅଗରେ ଥିଲା । କେବଳ ଗଣିତ ବିଷୟ ପ୍ରତି ଅତ୍ୟଧିକ ଆଗ୍ରହ ହେତୁ ସେ ୧୯୦୪ରୁ ୧୯୦୯ ମଧ୍ୟରେ ମହାବିଦ୍ୟାଳୟ ପରୀକ୍ଷାରେ ବାରମ୍ବାର ଅକୃତକାର୍ଯ୍ୟ ହୋଇ ଏକ ଡିଗ୍ରୀ ହାସଲ କରିପାରି ନଥିଲେ ସତ; କିନ୍ତୁ ତାଙ୍କ ଟିପାଖାତାରେ ସାଇତା ହୋଇ ରହିଥିବା ଗବେଷଣାଲବ୍ଧ ଗାଣିତିକ ତଥ୍ୟ ତାଙ୍କର ମୃତ୍ୟୁର ବହୁତ ବର୍ଷ ପରେ ପ୍ରାୟୋଗିକ ବିଜ୍ଞାନ କ୍ଷେତ୍ରରେ ବହୁଳ ଭାବରେ ବ୍ୟବହୃତ ହେଉଛି । ପୃଥିବୀର ଗଣିତପ୍ରେମୀ ଜନସାଧାରଣଙ୍କ ପାଇଁ ରାମାନୁଜନ୍‌ଙ୍କ ଟିପାଖାତା ହେଉଛି ଏକ ଅମୂଲ୍ୟ ସମ୍ପଦ ।

ରାମାନୁଜନ୍‌ଙ୍କ ଗାଣିତିକ ପ୍ରତିଭାର ବିକାଶରେ ମୁଖ୍ୟ ପୁରୋଧା ଥିଲେ ଇଂଲଣ୍ଡର କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଗଣିତଜ୍ଞ ଜି.ଏଚ୍.ହାର୍ଡ଼ି । ଇଂଲଣ୍ଡର ବିଖ୍ୟାତ ଟ୍ରିନିଟି କଲେଜର ଅଧ୍ୟାପକ ନେଭିଲ ଓ ହାର୍ଡିଙ୍କ ଆନ୍ତରିକ ଉଦ୍ୟମ ଫଳରେ ସେ ଗଣିତ ବିଷୟରେ ଅଧିକ ଗବେଷଣା ପାଇଁ ଇଂଲଣ୍ଡ ଯାତ୍ରା କରିଥିଲେ । ଇଂଲଣ୍ଡରେ ତାଙ୍କର ଚାରିବର୍ଷ ରହଣି ଭିତରେ ପ୍ରାୟ ୨୦ଟି ଅତି ଉଚ୍ଚକୋଟୀର ପେପର ଭଲ ଭଲ ଜର୍ଣ୍ଣାଲରେ ଛପାଇ ପାରିଥିଲେ ଓ ମେଥ୍‌ମେଟିକାଲ ସୋସାଇଟି, କେମ୍ବ୍ରିଜ ଫିଲୋସଫିକାଲ ସୋସାଇଟି, ଟ୍ରିନିଟି ଓ ରୟାଲ ସୋସାଇଟିର ଫେଲୋ ହୋଇଥିଲେ । ସେ ସମୟରେ କୌଣସି ଭାରତୀୟ ଏ ପ୍ରକାର ବିରଳ ସମ୍ମାନର ଅଧିକାରୀ ହୋଇ ନଥିଲେ ।

ଇଂଲଣ୍ଡରେ ଅସୁସ୍ଥ ହୋଇ ସେ ଥରେ ଏକ ନର୍ସିଂ ହୋମ୍‌ରେ ଚିକିତ୍ସିତ ହେଉଥିବାବେଳେ ଗଣିତଜ୍ଞ ହାର୍ଡି ତାଙ୍କୁ ଦେଖିବାକୁ ଯାଇଥିଲେ । କଥା ପ୍ରସଙ୍ଗରେ ରାମାନୁଜନ୍ ତାଙ୍କ ଟାକ୍ସିର ନମ୍ବରଟି ପଚାରିଲେ । ତାହା ଏକ ସାଧାରଣ ସଂଖ୍ୟା ୧୭୨୯ । ରାମାନୁଜନ୍ ତାଙ୍କ ସହିତ ଏକମତ ନ ହେଇ କହିଲେ– ତାହା ଦୁଇଟି ଭିନ୍ନ ପ୍ରକାରର ଦୁଇଟି ସଂଖ୍ୟାର ତୃତୀୟ ଘାତର ଯୋଗଫଳ ହେବାରେ ନିମ୍ନତମ ଗଣନ ସଂଖ୍ୟା ଅଟେ । ୧୭୨୯କୁ 'ରାମାନୁଜନ୍ ସଂଖ୍ୟା' କୁହାଯାଏ । ହାର୍ଡିଙ୍କର କୌତୂହଳ ମେଣ୍ଟାଇବାକୁ ସେ ବୁଝାଇଦେଇଥିଲେ ୧୭୨୯ ହେଉଛି ୯ ଓ ୧୦ର ତୃତୀୟଘାତ କିମ୍ବା ୧୨ ଓ ୧ ର ତୃତୀୟ ଘାତଗୁଡ଼ିକର ଯୋଗଫଳ ।




($୧୭୨୯ = ୯^{୩} + ୧୦^{୩}$ ବା $୧୭୨୯ = ୧୨^{୩} + ୧^{୩}$)

ଇଂଲଣ୍ଡରେ ତାଙ୍କ ରହଣିର ଶେଷଆଡ଼କୁ ସେ ଯକ୍ଷ୍ମାରୋଗରେ ପୀଡ଼ିତ ହୋଇ ୧୯୧୯ ମସିହା ମାର୍ଚ୍ଚ ମାସରେ ଭାରତକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ଅସୁସ୍ଥ ଥିବାରୁ ବିଶ୍ରାମ ନେଉଥିଲେ ମଧ୍ୟ ନୂତନ ଗାଣିତିକ ସୂତ୍ର କାଗଜରେ ଲେଖିବା ବନ୍ଦ କରି ନ ଥିଲେ ।

୧୯୨୦ ମସିହା ଅପ୍ରେଲ ୨୦ ତାରିଖରେ ଏହି ମହାନ୍ ଗଣିତଜ୍ଞଙ୍କର ୩୨ ବର୍ଷ ୪ ମାସ ବୟସରେ ଦେହାନ୍ତ ହୋଇଥିଲା । ତାଙ୍କର ଜନ୍ମଦିନ ଡିସେମ୍ବର ମାସ ୨୨ ତାରିଖକୁ 'ଗଣିତ ଦିବସ' ରୂପେ ପାଳନ କରାଯାଉଛି । ସ୍ୱଳ୍ପ ଜୀବନକାଳ ମଧ୍ୟରେ ଅନେକ ଦୁଃଖ ଯନ୍ତ୍ରଣାସତ୍ତ୍ୱେ ସମସ୍ତ ସୁଖସ୍ୱାଚ୍ଛନ୍ଦ୍ୟକୁ ତ୍ୟାଗକରି ଗଣିତ କ୍ଷେତ୍ରରେ ଥିବା ତାଙ୍କର ଅବଦାନ ଚିରସ୍ମରଣୀୟ ହୋଇ ରହିଥିବ ।

ବି.ଆର୍.ହାଇସ୍କୁଲ, ବେଲପାହାର, ଝାରସୁଗୁଡ଼ା-୭୬୮୨୧୮

## ବୁଦ୍ଧି ପରୀକ୍ଷା

ଶ୍ରୀ ସହଦେବ ସାହୁ

**୧ ।** ସାନୁ ଓ ମାନୁ ପରସ୍ପର ବିପରୀତ ଦିଗରେ ମଟର ସାଇକେଲରେ ଗଲେ । ଜଣେ ପୂର୍ବକୁ ଓ ଅନ୍ୟଜଣକ ପଶ୍ଚିମକୁ । ସାନୁ ଘଣ୍ଟାକୁ ୨୦କିଲୋମିଟର ଓ ମାନୁ ଘଣ୍ଟାକୁ ୩୦କିଲୋମିଟର ବେଗରେ ମଟର ସାଇକେଲ ଚଳାଉଥିଲା; କିନ୍ତୁ ଘଣ୍ଟାକ ପରେ ଦୁହିଁଙ୍କ ଭିତରେ ବ୍ୟବଧାନ ୫୦କିଲୋମିଟର ହେଲା ନାହିଁ । କାହିଁକି ? କେତେ କିଲୋମିଟର ହୋଇଥିବ ?

**୨ ।** କେଉଁ ଅପରାଧ ପାଇଁ ଦଣ୍ଡ ଦେଇ ହେବ ନାହିଁ ?

**୩ ।** ଗୋଟିଏ ଅଖା ଭିତରେ ୩ହଳ ଧଳା ଓ ୩ହଳ କଳା ଜୋତା ଅଛି । ଆଖି ବୁଜି କେତୋଟି ଜୋତା କାଢ଼ିଲେ ଧଳା ଜୋତା ହଳେ ନିଶ୍ଚୟ ମିଳିବ ?

**୪ ।** ତଳେ ଦିଆଯାଇଥିବା ଶବ୍ଦମାନଙ୍କରେ ମାତ୍ର ଗୋଟିଏ ଅକ୍ଷର ଯୋଡ଼ିଲେ ନୂଆ ନୂଆ ଶବ୍ଦ ହେବ । ସବୁଥିରେ ଗୋଟିଏ ମାତ୍ର ଅକ୍ଷର ବ୍ୟବହାର କରିବ । ଅକ୍ଷରଟି କ'ଣ ?

କ) ସଜ, ସର, ଗୁହା, ସହ ।

ଖ) ମର, ଧର, କର, ସର ।

**୫ ।** ପିଞ୍ଜରାକୁ ଯେପରି ଚଢ଼େଇ, ସେହି ଆଦର୍ଶରେ ନିମ୍ନଲିଖିତ ଉକ୍ତିଗୁଡ଼ିକରେ ଶୂନ୍ୟସ୍ଥାନ ପୂରଣ କର ।

କ) ଗାଈ ପାଇଁ ଗୁହାଳ, ଘୋଡ଼ା ପାଇଁ .......... ।

ଖ) ହାତକୁ ଦସ୍ତାନା, ପାଦକୁ ........... ।

**୬ ।** ୨୫ଜଣ ଛାତ୍ରଙ୍କର ହାରାହାରି ବୟସ ୧୦ । ଯଦି ସେମାନଙ୍କ ଶିକ୍ଷକଙ୍କ ବୟସ ମିଶାଇବା,ତେବେ ହାରାହାରି ବୟସ ଗୋଟିଏ ବର୍ଷ ବଢ଼ିଯିବ । ଶିକ୍ଷକଙ୍କର ବୟସ କେତେ ?

(ଉତ୍ତର ୩୮ ପୃଷ୍ଠାରେ)

## ଏହା କ'ଣ ?



ଡା. ଅଜିତାନନ୍ଦ ଗୋସ୍ୱାମୀ

ପାଞ୍ଚୋଟି ଅକ୍ଷରରେ ନାମ ତାହାର
ସ୍ୱାସ୍ଥ୍ୟ ପକ୍ଷରେ ବିଶେଷ ଉପକାର ।
ତାହାର ଦେଶଜ ମଧ୍ୟ ଆମେରିକା
ଏବେ ସବୁ ଗ୍ରୀଷ୍ମମଣ୍ଡଳୀୟରେ ଦେଖା ।
ପ୍ରଥମ ଦ୍ୱିତୀୟ ତୃତୀୟ ଧରିଲେ,
ସମୁଦ୍ର ମନ୍ଥନୁ ଧନ୍ୱନ୍ତରୀ ଧରି ଉଠିଲେ ।
ମିଳାଇବ ଯଦି ଦ୍ୱିତୀୟ ତୃତୀୟ,
ଶରୀର ହୋଇଯାଏ ଟି ନିଷ୍କ୍ରିୟ ।
ପ୍ରଥମ ପଞ୍ଚମର ଏକତ୍ରରେ
ପକ୍ଷୀରୁ ବାହାରେ (ପୁଣି ଏଥିରୁ) ପକ୍ଷୀ ବାହାରେ ।
ଚତୁର୍ଥ ପଞ୍ଚମ ଯଦି ଧରିବ,
କଦଳୀ କାନ୍ଦି ଏଥୁଁ ବାହାରିବ ।
ସୁସ୍ୱାଦୁ ଅଟେ ପକ୍ୱ ଅବସ୍ଥାରେ
ଅନେକ ଗୁଣ ଥାଏ ତ ଏଥିରେ ।
ଭିଟାମିନ୍ ଏ.ସି ଆଉ ସୁଗାର
ମିନେରାଲସ୍ ଏଞ୍ଜାଇମ୍ ଓଗେର ।
କ୍ଷୁଦା ନ ହେବା କୋଷ୍ଠକାଠିନ୍ୟ ଅର୍ଶ
ଯକୃତ ପ୍ଲିହା ରୋଗ(ଫୁଲା) ଆଉ ବିମର୍ଶ ।
ସଚ୍ଛିଦ୍ର ମାଢ଼ି କମ ଦୃଷ୍ଟିଶକ୍ତି
ରୋଗ ସବୁ ଦୂର ହୁଏ ଏହା ଖାଇଲେ ନିତି ।
ଏବେ କହିଲ ଏହା କ'ଣ ଅଟେ
ଶସ୍ତାରେ ମିଳଇ ଏହା ବଜାରହାଟେ ।
ଏହା କ'ଣ ଜାଣି ନ ପାରିଲେ ଉତ୍ତର ଦେଖ
ନିତି ଏହାକୁ ଖାଇଲେ ମିଳଇ ସୁଖ ।

ଅଚ୍ୟୁତାନନ୍ଦ ମାର୍ଗ, ଅରୁଣୋଦୟ ନଗର, କଟକ– ୭୫୩୦୧୨

(ଉତ୍ତର ୪୨ ପୃଷ୍ଠାରେ)

# କଠଉ

ଡା ରତ୍ନାକର ମଲ୍ଲିକ

ଗୋବରୀ ନଈର ଆରପାରିରେ ଦେଈ ଘର ଗାଁ । ଡଙ୍ଗାରେ ପାରିହୋଇ ମୁଁ ସେ ଗାଁକୁ ଯାଏ । ନଈର ଦୁଇ କୂଳରେ କାଶତଣ୍ଡୀ ପଠା ଏଡ଼େ ସୁନ୍ଦର ଦିଶୁଥାଏ ଯେ ଦେଖିଲେ ଲାଗିବ ପବନ ଦୋଳି ଖେଳୁଛି । ଆକାଶରେ ଉଡ଼ି ବୁଲୁଥାନ୍ତି ମୀନରଂକା ଚଢ଼େଇ କେତୋଟି । ଡେଂଗା ତାଳଗଛଗୁଡ଼ିକ ଠିଆହୋଇଥାନ୍ତି ସେ ନଈର କୂଳେ କୂଳେ । ସକାଳର ସୁନାରଂଗ ଖରା ବିଂଚି ହୋଇ ପଡୁଥାଏ ଚାରିଆଡ଼େ ।

ଦେଈ ମୋତେ ଭାରି ଭଲପାଏ । ସେତେବେଳକୁ ମୋର ବୟସ ଆଠ ଦଶ ବର୍ଷ, ଗାଁ ସ୍କୁଲରେ ପାଠ ପଢୁଥାଏ । ପିଲାଟି ଦିନରୁ ମୋର ଗୀତ ପ୍ରତି ଭାରି ଆଦର । କିଏ ଯଦି ଗୀତ ଗାଇଲା, ତା' ପାଖରେ ବସି ଶୁଣିବାକୁ ମୋର ଭାରି ମନହୁଏ । କେବେ କେନ୍ଦେରା ବଜାଉଥିବା ନାଥର ଗୀତ ହେଉ, ଅଥବା ବାଉଁଶରାଣୀର ଗୀତ, କେବେ ଗଛ ଡାଳରେ ଉଡ଼ି ବୁଲୁଥିବା ହଳଦୀ ବସନ୍ତର କଳକୂଜନ ଶୁଣିବାକୁ ମୁଁ କାନ ଡେରିଥାଏ ।

ଗୀତ ପ୍ରତି ପିଲାଦିନରୁ ମୋର କାହିଁକି ଯେ ଏତେ ଆଦର, ସେ କଥା ମୁଁ ନିଜେ ମଧ୍ୟ ଜାଣିନାହିଁ । ଗୀତ ଶୁଣେ, କେବେ ଏକା ଏକା ବାଟରେ ଯାଉ ଯାଉ ଗୀତରୁ ସୁର ଗୁଣୁଗୁଣଉଥାଏ । ମୋତେ ଭଲଲାଗେ । ଆକାଶରେ ବାଦଲର କାଚଘର ଦେଖିବାକୁ । ସୂର୍ଯ୍ୟାସ୍ତର ଚିତ୍ରିତ ଦିଗ୍‌ବଳୟ ଦେଖି ମୁଁ ଖୁସିରେ ଆତ୍ମହରା ହୋଇପଡ଼େ । ଆଃ କି ସୁନ୍ଦର ସେ !

ପଥ-ଅପଥରେ ଅନେକ ଫୁଲ, ବୃକ୍ଷ, ଲତାରେ ମୁଁ ଦେଖେ ଫୁଲମାନେ ମୋତେ ଦେଖି ଖୁସିରେ ହସିଉଠୁଥାନ୍ତି । ମୁଁ କେବେହେଲେ ଏ ସୁନ୍ଦର ଫୁଲଗୁଡ଼ିକ ଅକାରଣେ ତୁଟାଏ ନାହିଁ । ଭାବେ– ସେ ଫୁଲ ସେଇଠି ଫୁଟି ସୁନ୍ଦର ଦିଶୁଥାଉ । ତାକୁ ପରମେଶ୍ୱର ଗଢ଼ିଛନ୍ତି । କେତେ ରଂଗ, କେତେ ଗଂଧରେ ସେ ଭରିଛନ୍ତି ତାକୁ । ତା'ଠାରୁ କିଛି ଶିଖ । ତୁଟାଇଲେ କି ଲାଭ ?

ଦେଈଙ୍କଘରଠାରୁ ଅଳ୍ପ ଦୂରରେ ଥାଏ ଏକ ମହାପୁରୁଷଙ୍କ ମୂର୍ତ୍ତି । ସେ ପଥରରେ ତିଆରି ହୋଇଥାଏ । ମହାପୁରୁଷ ଆଖିମୁଦି ଧ୍ୟାନମୁଦ୍ରାରେ ଥା'ନ୍ତି । ତାଙ୍କ ଆଗରେ ଦୁଇଟି କାଠର କଠଉ ଥାଏ । ସେ ଅତି ପୁରୁଣା ପୁରୁଣା ଲାଗୁଥାଏ । ତା ପାଖକୁ ଲାଗି ରଂଗଣୀ ଫୁଲ ନାନାରଂଗରେ ଫୁଟି ସୁନ୍ଦର ଦିଶୁଥାଏ ।



ସେଇଠିକୁ ଯାଇ ମୁଁ ମହାପୁରୁଷଙ୍କ ମୂର୍ତ୍ତିକୁ ଦେଖିଲି । ମନେ ମନେ ତାଙ୍କୁ ଚିନ୍ତା କରି ହାତଯୋଡ଼ି ପ୍ରଣାମକଲି ଆଉ ଦେଖିଲି କଠଉ ଦୁଇଟି ଉପରେ ଧୂଳିର ଆସ୍ତରଣ ଜମି ଧୂସର ଦିଶୁଛି । ତେଣୁ ମୋ ରୁମାଲରେ ଝାଡ଼ିଝୁଡ଼ି ତାକୁ ସଫା କରିଦେଲି ।

ସେତେବେଳେ ଏଇ କଠଉକୁ ସମସ୍ତେ ବ୍ୟବହାର କରୁ ନ ଥିଲେ । ଯେଉଁମାନେ ବ୍ରାହ୍ମଣ, ବୈରାଗୀ ଏବଂ ସାଧୁ; ସେମାନେ ପାଦରେ ମାଡ଼ି ଯିବାଆସିବା କରୁଥିଲେ । ଚାଲିଲାବେଳେ ସେ ଠପ୍‌ଠାପ୍ ଶବ୍ଦ କରେ । ପୂର୍ବକାଳରେ ପ୍ରାୟତଃ ରାଜା ମହାରାଜା, ଜମିଦାର, ପଣ୍ଡିତ, କବି ଏବଂ ଗାୟକମାନେ ଏଇ କଠଉର ବହୁଳ ବ୍ୟବହାର କରୁଥିଲେ । କଠଉ ସେତେବେଳେ କାଠରେ ହିଁ ତିଆରି ହେଉଥିଲା ।

ସେଇ କଠଉଟି ଦିନେ ଏଇ ମହାପୁରୁଷ ତାଙ୍କ ପାଦରେ ପିନ୍ଧି କେତେଆଡ଼େ ବୁଲିଥିବେ । ସେ କଥା କିଏ ଜାଣେ ? ହୁଏତ ଏ ମାଟି କହିପାରିବ, ସେ କେତେ ଆତ୍ମଦର୍ଶୀ ଥିଲେ, ସେ କେତେ ମହତ ଥିଲେ । ସେତେବେଳର ଲୋକେ ଜାଣିଥିବେ, ଯେଉଁମାନେ ଆଜି ମାଟିରେ ମିଶିଛନ୍ତି । ବେଳେବେଳେ ମୁଁ ଭାବେ ଏଡ଼େ ସୁନ୍ଦର ଜ୍ଞାନବାନ ମଣିଷ କାହିଁକି ମରିଯାଏ, ଆଉ ଏଡ଼େ ସୁନ୍ଦର ସଂସାରକୁ ଛାଡ଼ି କୁଆଡ଼େ ପଳାଏ ।

ପଛରେ ଛାଡ଼ିଯାଏ ତା' ମାଟିର ଘର, ରାଜପ୍ରାସାଦ, ରାଜଉଦ୍ୟାନ ଓ ତାର ଲକ୍ଷ ଲକ୍ଷ ସୈନ୍ୟସେନା । ରାଣୀ ହଂସପୁର ଆଉ ଅଶୋକ ବନ... କେତେ ବଡ଼ ବଞ୍ଚିରହିବାର ଆୟୋଜନ, ପୁଣି କେତେ କ୍ଷୁଦ୍ର ଏ ଜୀବନ ! ଥରେ କେହି କ'ଣ ଏ ବିଷୟରେ ଚିନ୍ତା କରିଛି ! ଯଦି ଚିନ୍ତା କରିଥାନ୍ତା, ତେବେ ଏଠି ଲଢ଼େଇ ହୁଅନ୍ତା ନାହିଁ ଦୁଇପାଦ ଭୂମି ପାଇଁ, ଲଢ଼େଇ ହୁଅନ୍ତା ନାହିଁ ସୁନ୍ଦରୀ କନ୍ୟା ପାଇଁ... ।

ମହାପୁରୁଷ ଜୀବିତ ଥିଲାବେଳେ ସେ ସତ୍ୟପଥରେ ଚାଲିଛନ୍ତି ଏବଂ ମୃତ୍ୟୁପରେ ମଧ୍ୟ ତାଙ୍କର ଆତ୍ମା ସେ ପଥରୁ ବିଚ୍ୟୁତ ହୋଇନି । ସେ ପୂର୍ବରୁ ଥିଲେ ଯାହା, ପରେ ମଧ୍ୟ ସେଇଆ । ହୀରାକୁ ଲକ୍ଷ ବର୍ଷ ଧରି ପଙ୍କରେ ଫିଙ୍ଗିଦିଆଯାଏ । ହୀରା ତଥାପି ତା'ର ଗୁଣ ହରାଇ ନ ଥାଏ । ସେ ସ୍ୱଚ୍ଛ, ଚିରନ୍ତନ ଏବଂ ଆନନ୍ଦ ତାର ଧର୍ମ, ପ୍ରେମ ତା'ର ବାସ୍ତବ ।

ମହାପୁରୁଷଙ୍କ ଧ୍ୟାନମଗ୍ନ ମୂର୍ତ୍ତିକୁ ଦେଖି ମୋ ଭିତରେ ଭକ୍ତିଭାବ ଆସିଲା । ମୁଁ ମନେ ମନେ କହିଲି, "ହେ ମହାପୁରୁଷ ! ତୁମେ କିଏ– ତୁମେ ବୁଦ୍ଧ, କି ତୁମେ ମହାବୀର ଜୈନ, କି ଅଚ୍ୟୁତାନନ୍ଦ... ମୁଁ ସେ କଥା ଜାଣେନା । ମୁଁ ଜାଣେ ମହାପୁରୁଷଙ୍କ ଆତ୍ମା ସଦା ମଙ୍ଗଳମୟ । ସେ ସମସ୍ତଙ୍କୁ ସତ୍ୟପଥରେ ନେଇଯାଆନ୍ତି । ସତ୍ୟର ସଙ୍ଗ ହେବାପାଇଁ କହନ୍ତି ।

ମୁଁ ଅଜ୍ଞାନ ବାଳକ, ଘୋର ଅନ୍ଧକାର ଭିତରେ ବଞ୍ଚିଛି, ମୋତେ ପଥ ଦେଖାଅ । ମୋର ଜୀବନକୁ ସୁରଭିତ କରିଦିଅ । ତୁମ ପ୍ରେମ ଆଲୋକରେ ମୋତେ ଆଲୋକିତ କରିଦିଅ । ମୋତେ ସେଇ ଦିବ୍ୟଜ୍ଞାନ ଦିଅ... ମୋ ଜୀବନ ଅନ୍ୟର ସେବାରେ ବିତିଯାଉ । ଏ ମାଟିର ମଣିଷ ଛୋଟରୁ ବଡ଼ ହୁଏ । ନରରୁ ନାରାୟଣ ହୁଏ । ଭଗୀରଥ ହୋଇ ସ୍ୱର୍ଗରୁ ନେଇଆସେ ଗଙ୍ଗାଙ୍କୁ ।

ସନ୍ଧ୍ୟା ହେଲା, ସାହିର ଝିଅବୋହୂମାନେ ସନ୍ଧ୍ୟାଦୀପ ଧରି ମହାପୁରୁଷଙ୍କ ପାଦ ତଳେ ପ୍ରଣାମ କଲେ । ଘଣ୍ଟି ବାଜିଲା, ଧୂପର ମହକ ଚାରିଆଡ଼େ ଖେଳିଗଲା । ମୁଁ ଶେଷରେ ମୋ ଦେଇ ଘରକୁ ଫେରିଲି । ଧୀରେ ଧୀରେ ରାତି ହେଲା । ମୁଁ ନିଦ୍ରାରେ ଶୋଇପଡ଼ିଲି । ମୁଁ ସ୍ୱପ୍ନ ଦେଖୁଥାଏ, ନିସ୍ତବ୍ଧ ରାତି ଚାରିଆଡ଼େ ଘନ ଅନ୍ଧକାର ।

ମହାପୁରୁଷ ସେଇ କଠଉକୁ ପାଦରେ ପିନ୍ଧି ଧୀରେ ଧୀରେ ମୋ ପାଖକୁ ଆସୁଥାନ୍ତି । ଦେହରେ ଗେରୁଆ ବସ୍ତ୍ର । ଲଣ୍ଡିତ ମୁଣ୍ଡ, କାନ୍ଧରେ ପଇତା, ମୁଖମଣ୍ଡଳରେ ହସର ରେଖା । ସେ ଆସି ମୋ ପାଖରେ ବସିଯାଉଥାନ୍ତି । ଘରଟା ଚନ୍ଦନ ଚନ୍ଦନ ପରି ମହକୁଥାଏ ।

ସେ ହସି ହସି ମୋତେ କହୁଥାନ୍ତି, "ବସ୍ସ ! ମୁଁ ତୁମକୁ ଦେଖିବା ପାଇଁ ଏଠିକୁ ଚାଲିଆସିଲି । ତୁମେ ଜଣେ ସୁଧାର ବାଳକ । ତୁମ ଆତ୍ମାର ସୁଗନ୍ଧକୁ ମୁଁ ଭୁଲିପାରିଲି ନାହିଁ । ତୁମ ଭିତରେ ମୁଁ ଦେଖିଲି ଏକ ଦିବ୍ୟ ଜ୍ୟୋତି । ଏଇ ଜ୍ୟୋତି ତୁମକୁ ଦିନେ ଆଲୋକମୟ କରିବ । ଦିନ ଆସିବ, ତୁମେ ଏ ସଂସାରର ଦୁଃଖୀ ମଣିଷକୁ ଆନନ୍ଦର ସନ୍ଧାନ ଦେବ । ବଡ଼ ହେଲେ ତୁମେ ହେବ କାଳିକଲମର ଦାସ ।

ମଣିଷ ଜୀବନର ଦୁଃଖ ଯାତନା, କାମନା ବାସନାର କବିତା ତୁମେ ଲେଖିବ । ତୁମ ଭିତରେ ସେ କେଉଁ ଯୁଗର ଋଷିର ଆତ୍ମା ପୁନଃ ଉଦୟ ହେବ । ଏକଥା ସତ୍ୟ ଏବଂ ମୁଁ ମୋ ଆସ୍ଥାନରେ ବସି ଶୁଣିବି ତୁମରି ଐଶ୍ୱର୍ଯ୍ୟମୟ ଗାଥା ।

ତୁମ ଆଖିରେ ଅଛି ପଦ୍ମପୋଖରୀର ଦୃଶ୍ୟ ଏବଂ ମନରେ ଅଛି ଉଦୟ ସୂର୍ଯ୍ୟର ଅନନ୍ତ ଅରୁଣିମା । ମୁଁ ଆସିଥିଲି ତୁମକୁ ଆଶୀର୍ବାଦ ଦେବାକୁ । ରାତି ଅନେକ ହେଲାଣି ମୁଁ ଫେରିଯାଉଛି ଆସ୍ଥାନକୁ ।"

ତା'ପରେ... ମୋ ନିଦ୍ରା ଭାଙ୍ଗିଗଲା । ଶୁଣିଲି ବାହାରେ କୁକୁରମାନେ ଭୁକୁଛନ୍ତି । ସ୍ୱପ୍ନ କଥା ମନେପଡ଼ିଗଲା । ଭାରି ଭୟ ଲାଗିଲା ।

ସକାଳ ହେଲା । ଦେଖାଗଲା ମହାପୁରୁଷଙ୍କ କଠଉ ଥୁଆ ହୋଇଛି ଦେଈଘର ଦୁଆରେ । ଏ ତ ବଡ଼ ଆଶ୍ଚର୍ଯ୍ୟର କଥା ! କଠଉ ସେଠିକୁ ଗଲା କିପରି ? ଲୋକେ କହିଲେ, "ସେ ପିଲାଟି କାଲି ସେ କଠଉ ସଫା କରୁଥିଲା, ସେ ବୋଧେ ନେଇ ସେଇଠି ରଖିଛି ।" ମୋତେ ପଚାରିଲେ ମୁଁ ମନା କଲି । କହିଲି, "ସେଥିରେ କେଉଁଦିନରୁ ଧୂଳିମାଟି ଲାଗିଥିଲା, ମୁଁ ତାକୁ ସଫା କରି ସେଇଠି ରଖିଦେଇଥିଲି ।"

କିନ୍ତୁ ବାସ୍ତବ କଥା କିଏ କାହିଁ ଜାଣିବେ ?

ମହାପୁରୁଷ ରାତିରେ ମୋ ପାଖକୁ ଆସିଥିଲେ । ସେ କଥାକୁ କିଏ କ'ଣ କେବେ ବିଶ୍ୱାସ କରିବେ ! ଫେରିଲାବେଳେ କଠଉ ନେବାକୁ ଭୁଲିଯାଇଥିଲେ । ମହାପୁରୁଷ, ସେ କେଉଁ ଯୁଗରୁ ମାଟିରେ ମାଟି ହୋଇଗଲେଣି; କିନ୍ତୁ ସେ ପଥର ମୂର୍ତ୍ତି ଭିତରେ ବଞ୍ଚିରହିଛି ତାଙ୍କର ଅମୃତମୟ ଆତ୍ମା । ସେ ଅମର ଆତ୍ମା ସମସ୍ତଙ୍କ ସାଥିରେ ଅଛି । ସେ ସୁଖରେ ବିଭୋର ହୋଇ ଗୀତ ଗାଉଛି, ଫୁଲପରି ଫୁଟି ବିତରିଦେଉଛି ତାର ସୁଗନ୍ଧ ।

ସକାଳୁ ଉଠି ରାତିର ସ୍ୱପ୍ନ କଥା ଦେଈଙ୍କ ଆଗରେ ବଖାଣିଲି । ଦେଈ ସେ କଥା ଶୁଣି କହିଲେ, "ଠାକୁରେ ତୋତେ କଲ୍ୟାଣ କରିଛନ୍ତି, ତୋର ଭାଗ୍ୟ ଭଲ, ଯା' ନେଇଯା, ଏ କଠଉକୁ ନେଇ ତାଙ୍କ ପାଦତଳେ ରଖିଦେଇ ଆସିବୁ ।"

ମୁଁ ସେଇ କଠଉ ଦୁଇଟିକୁ ଧରି ମହାପୁରୁଷଙ୍କ ପାଦତଳେ ରଖିଦେବାକୁ ଯାଉଥିଲି । ତାଙ୍କର ଭାବମୟ ମୂର୍ତ୍ତି ଦେଖି ମୁଁ ଭାବରେ ବିଭୋର ହୋଇଗଲି । ମୋ ଆଖିରୁ ଧାର ଧାର ହୋଇ ଲୁହ ଝରି ସେ କଠଉ ଦୁଇଟି ଭିଜିଗଲା । ଲୋକେ ମୋତେ ଦେଖି କହିଲେ, "ଏ ପିଲାଟା ପାଗଳ । କାଠର କଠଉରେ କଅଣ ବା ଅଛି । ସେ ତାକୁ ଛାତିରେ ଧରି ଦେଖ କିମିତି କାନ୍ଦୁଛି !"

ତରାଣ୍ଡୋ, ବାରୋ, କେନ୍ଦ୍ରାପଡ଼ା

---

**ସା.ଜ୍ଞାନର ଉତ୍ତର–** ୧) ଅକ୍ଟୋବର ୫, ୨) ଡୋପ୍‌ଲର୍ ପରୀକ୍ଷା, ୩) ଜର୍ମାନୀର ମାକ୍ସଗ୍ରେଜ୍, ୪) ମାର୍ଟିନ ଲୁଥର, ୫) Indian Coast Guard, ୬) ଏପ୍ରିଲ ୧୬ ୧୮୫୩, ୭) ମାର୍ଚ୍ଚ ୧୩, ୮) ପୁସ୍ତକ ଚିକିତ୍ସା, ୯) ସ୍ୱିଡେନ୍, ୧୦) ଆମେରିକା, ୧୧) କିଶୋର କୁମାର ।

# ନାତିର କ୍ରିକେଟ୍ ଖେଳ

ଶ୍ରୀ ବିଷ୍ଣୁ ମୋହନ

ବସିଥିଲେ ଜେଜେ ଏକାକୀ ହୋଇ
ମାରୁଥିଲେ ବସି ଅଳସ ହାଇ
ନାତି ଏହା ଦେଖି କହିଲା ଯାଇ
ଜେଜେଙ୍କୁ କ୍ରିକେଟ ଖେଳିବା ପାଇଁ ।
ହସିହସି ଜେଜେ କହିଲେ ଶୁଣି
କ୍ରିକେଟ ଖେଳ ଆଉ ମୁଁ ପୁଣି !
ଆମବେଳେ ଏହି ଖେଳ ନଥିଲା
ବାଗୁଡ଼ି ଖେଳିକି ଦିନ ବିତିଲା ।
ନାତି କଥା ଜେଜେ ଭାଙ୍ଗି ନ ପାରି
ଦୁହେଁ ମିଶିଗଲେ ବ୍ୟାଟ୍ ଧରି
ନାତି କହେ ଜେଜେ ବୋଲିଂ କର
ଭାରି ସହଜ ଏ କାହିଁକି ଡର ?
ଫୋପାଡ଼ିଲେ ବଲ୍ ଡିମା ଯେପରି
ପକାଇଲେ ଜେଜେ ବଲ ସେପରି
ନାତି ବଲ୍‌ଟିକୁ ବାଡ଼େଇ ଦେଲା
ଜେଜେଙ୍କ ମୁଣ୍ଡେ ଆସି ବାଜିଲା ।
ପଡ଼ିଗଲେ ଜେଜେ କଚାଡ଼ି ହୋଇ
'ମରିଗଲି' ବୋଲି କହିଲେ ସେଇ
ବଲ୍ ବାଜିକି ରକ୍ତ ବହିଲା
ଖବର ପାଇକି ପୁଅ ଆସିଲା ।
ପୁଅ ନାତି ଗାଲେ ଚାପୁଡ଼ା ଦେଲେ
ଅବାକ୍ ହୋଇକି ଜେଜେ ଚାହିଁଲେ
ଜେଜେ, ପୁଅ, ନାତି ଘରକୁ ଗଲେ
ଔଷଧ ଲେପରେ ଭଲ ହୋଇଲେ ।
ଅଜଣା କାମକୁ ଯିବନି ପିଲେ
ସୁଖେ ଦିନ ଯିବ ମନେ ରଖିଲେ
ନ ମାନିଲେ ତୁମେ ଦଶା ଭୋଗିବ
ଜେଜେ, ନାତି କଥା ମନେ ରଖିବ ।

ଏ/୫୮, କ୍ରିଷ୍ଣା ଗାର୍ଡନ-୨, ଅତ୍ରଗିରି, ଭୁବନେଶ୍ୱର-୩୦



# ଖେଳ କୁଇଜ

ଶ୍ରୀ ଓମ୍ ପ୍ରକାଶ ରଥ

୧ । ଅଲିମ୍ପିକ୍‌ରେ ପ୍ରତିନିଧିତ୍ୱ କରିଥିବା କେଉଁ ପ୍ରସିଦ୍ଧ ଭାରତୀୟ ଖେଳାଳୀଙ୍କ ପିତା ଓ ମାତା ମଧ୍ୟ ଭାରତ ତରଫରୁ ଅଲିମ୍ପିକ୍ ଖେଳରେ ପ୍ରତିନିଧିତ୍ୱ କରିଛନ୍ତି ?

୨ । K.P.-The Autobiography କାହାର ଆତ୍ମଜୀବନୀର ନାଁ ?

୩ । ଏନ୍. ରମେଶର କେଉଁ ଖେଳାଳୀଙ୍କ ତାଲିମ୍‌ଦାତା ?

୪ । ଧ୍ୟାନଚାନ୍ଦ୍‌ଙ୍କ କେଉଁ ସାନଭାଇଙ୍କ ନାମରେ ଏକ ଷ୍ଟାଡିୟମ୍‌ର ନାମକରଣ କରାଯାଇଛି ?

୫ । ୨୦୨୨ ରାଜ୍ୟଗୋଷ୍ଠୀ କ୍ରୀଡ଼ା କେଉଁଠାରେ ଅନୁଷ୍ଠିତ ହେବ ?

୬ । କେଉଁ ଫୁଟବଲ ତାରକାଙ୍କ ପ୍ରତିମୂର୍ତ୍ତି ନିକଟରେ କଲିକତାରେ ଉନ୍ମୋଚିତ ହୋଇଛି ?

୭ । 'ଜୁଡୋ'ର ଉଦ୍ଭାବକଙ୍କ ନାଁ କ'ଣ ?

୮ । ପୃଥିବୀରେ ଦୁଇଟି ଲର୍ଡସ ଖେଳପଡ଼ିଆ ଅଛି, ଗୋଟିଏ ଇଂଲଣ୍ଡରେ ଅନ୍ୟଟି କେଉଁଠି ?

୯ । କେଉଁ ଭାରତୀୟ ମହିଳା ଖେଳାଳୀ ଟପ୍-ରେମନ ଓ ଫର୍ଚ୍ଚୁନ୍ ତୈଳ ବିଜ୍ଞାପନ କରୁଥିଲେ ?

(ଉତ୍ତର ୩୬ ପୃଷ୍ଠାରେ)

# ଶଙ୍କରଦାଦା

ଶ୍ରୀ ରମେଶ ଚନ୍ଦ୍ର ଦାଶ

ତପନ ଓ ସପନ ଦୁଇ ସାଙ୍ଗ । ଦିନେ ଦୁହେଁ ତାଙ୍କ ଗ୍ରାମରେ ଥିବା ନଦୀକୁ ଗାଧୋଇବାକୁ ଗଲେ । ହଠାତ୍ ତପନର ଗୋଡ଼ ଖସିଗଲା । ସପନ କ'ଣ କରିବ ଭାବି ପାରିଲା ନାହିଁ । ସେ ତାକୁ ଟାଣି ଆଣିବା ପାଇଁ ଆଗେଇଲା ବେଳକୁ ତାର ଗୋଡ଼କୁ କେହି ଜଣେ ଟାଣି ଧରିବା ପରି ମନେକଲା । ସେ ପଛକୁ ବୁଲିପଡ଼ି ଚାହିଁଲା ତ ସେ ହେଉଛନ୍ତି ତାଙ୍କ ଗ୍ରାମର ଶଙ୍କର ଦାଦା । ପୂର୍ବଦିନ ତପନର ବାପା ଓ ଶଙ୍କରଦାଦାଙ୍କ ମଧ୍ୟରେ ଘୋର ଗଣ୍ଡଗୋଳ ହୋଇଥିଲା । ଏପରିକି ହାତାହାତି ପର୍ଯ୍ୟନ୍ତ ଦୁହେଁ ଚାଲିଯାଇଥିଲେ । ସପନ ଭାବିଲା ବୋଧହୁଏ ଶଙ୍କର ଦାଦା ତପନକୁ ସେହି କାରଣରୁ ରକ୍ଷା କରିବାକୁ ଚାହୁଁନାହାଁନ୍ତି । ସେ ତେଣୁ ଖୁବ୍ ଉତ୍ତେଜିତ ଗଳାରେ କହିଲା– ଶଙ୍କରଦାଦା, ତୁମେ ଯାହା କରୁଛ ଆଦୌ ଭଲ କରୁନାହଁ । ମୋତେ ମୋର ସାଙ୍ଗକୁ ରକ୍ଷା କରିବାକୁ ଦିଅ ।



ଏହା କହିବା ସହିତ ପୁନର୍ବାର ଉଦ୍ୟମ କଲା ତପନ ପାଖକୁ ଯିବା ପାଇଁ । ଶଙ୍କରଦାଦା ଅନ୍ୟ ଉପାୟ କିଛି ନ ପାଇ ତାକୁ ଚାପୁଡ଼ା ମାରି ନିଜ କାନ୍ଧରେ ଥିବା ନୂଆ ଗାମୁଛାଟିକୁ ପକାଇଦେଲେ ତପନ ଆଡ଼କୁ । ଦୁର୍ଭାଗ୍ୟକୁ ସେଇଟି ମଧ୍ୟ ଭାସିଗଲା । ତପନ 'ରକ୍ଷାକର, ରକ୍ଷାକର' ଡାକ ଛାଡୁଥାଏ । ଶଙ୍କରଦାଦା ନିଜେ ପିନ୍ଧିଥିବା ଧୋତିର ଅଧା ଚିରିବା ସହିତ ତାର ଗୋଟିଏ ମୁଣ୍ଡ ହାତରେ ଧରି ପକାଇଦେଲେ ତପନ ଆଡ଼କୁ । ଏଥର ତପନ ତାକୁ ଜୀବନ ବିକଳରେ ଧରିପକାଇଲା । ଧୀରେ ଧୀରେ ତାକୁ ଟାଣିଆଣିଲେ ଶଙ୍କରଦାଦା । କୂଳକୁ ଆସିବାବେଳକୁ ସେ ଅଚେତ ହୋଇଯାଇଥାଏ । ତାକୁ ଟେକି ନେଇଗଲେ ଉପରକୁ । ପେଟକୁ ତଳ କରି ଚିପିବାକୁ ଲାଗିଲେ । ପାଟିରୁ ସେ ଭକ୍‌ଭକ୍ କରି କିଛି ପାଣି ବାହାର କରିବା ପରେ ସେ ସାମାନ୍ୟ ଆଖି ଖୋଲିଲା ।



ସେ ସେହିପରି ଓଦା ଅବସ୍ଥାରେ କାନ୍ଧରେ ପକାଇ ନେଇଗଲେ ନିକଟରେ ଥିବା ଡାକ୍ତରଖାନାକୁ । ସପନ ଏସବୁ ଦେଖୁଥାଏ । ତାକୁ କାନ୍ଧରେ ପକାଇ ନେଇଯିବା ଦେଖି ସପନ ଗାଁକୁ ଦୌଡ଼ିଲା । ତାର ପାଟିରୁ କଥା ବାହାରୁ ନଥାଏ । ସେ ଠାରରେ ଗାଁରେ ଜଣାଇବା ପରେ ତପନର ବାପା ଶଙ୍କରକୁ ନାନା ପ୍ରକାର ଗାଳି କରିବାକୁ ଲାଗିଲେ । ପୂର୍ବଦିନର ରାଗ ଶୁଝାଇବାକୁ ଶଙ୍କର ତାକୁ ପାଣିରେ ବୁଡ଼ାଇ ଅଭିନୟ କରୁଛି ବୋଲି ଭାବିଲେ ।

ଏଥିପାଇଁ ସେ ଆଗ ଡାକ୍ତରଖାନା ଯିବେ କ'ଣ, ଥାନାରେ ଏ ବିଷୟରେ ଆଗ ଜଣାଇଲେ । ଥାନାବାବୁ ଏପରି ଅଭିଯୋଗ ପାଇ ନିଜେ ଡାକ୍ତରଖାନାରେ

ପହଞ୍ଚିଲେ । ସେଠାରେ ଡାକ୍ତର ତାର ଚିକିତ୍ସାରେ ଲାଗିପଡ଼ିଥା'ନ୍ତି । ସେ ଶଙ୍କରକୁ ଗିରଫ କରିବାକୁ ଗଲାବେଳେ ଡାକ୍ତରବାବୁ ତାର ବିରୋଧ କଲେ ।

ସେ ତପନର ବାପାଙ୍କୁ କହିଲେ, ''ଆଗ ତୁମ ପୁଅ ପାଖକୁ ଯାଅ ଓ ଘଟଣା ସମ୍ପର୍କରେ ଭଲଭାବରେ ବୁଝ । ତା'ପରେ କ'ଣ କରିବା ଉଚିତ୍, କ'ଣ କରିବା ଅନୁଚିତ ଜାଣିବ ।'' ପୋଲିସ୍‌ବାବୁଙ୍କ ସହିତ ତପନର ବାପା ତପନ ପାଖକୁ ଗଲେ । ସେତେବେଳକୁ ସପନ ମଧ୍ୟ ଆସିଯାଇଥାଏ । ତପନ ଠାରୁ ସବୁ ଶୁଣିବା ପରେ ସେ ଶଙ୍କରକୁ କୁଣ୍ଢାଇ ପକାଇଲେ । ନିଜର ଦୋଷ ପାଇଁ କ୍ଷମା ପ୍ରାର୍ଥନା କଲେ । ଏହା ଦେଖି ଶଙ୍କରଦାଦା କହିଲେ, ''ତୁମ ଓ ମୋ ଭିତରେ ଶତ୍ରୁତାକୁ ପିଲାଙ୍କ ଉପରେ ଲଦିବା ଆଦୌ ଠିକ୍ ନୁହେଁ ।''

ଶଙ୍କରଦାଦା ସପନକୁ ବୁଝାଇ କହିଲେ– ତୁ ମନେରଖ, ବୁଡ଼ିଯାଉଥିବା ବ୍ୟକ୍ତିଙ୍କ ପାଖକୁ କେବେହେଲେ ଯିବୁନାହିଁ । ମୁଁ ଯେପରି କଲି, ସେପରି କରିବୁ ଅଥବା ନିକଟରେ ଥିବା ଲଟା, ଦଉଡ଼ି, ବାଉଁଶ ଇତ୍ୟାଦି ପକାଇ ତାକୁ ରକ୍ଷା କରିବାକୁ ଚେଷ୍ଟା କରିବା ଉଚିତ୍ । ତୁ ଯେପରି ଅମାନିଆ ହେଉଥିଲୁ, ମୁଁ ଚାପୁଡ଼ା ମାରି ନ ଥିଲେ ତୋର ଯେ ଅବସ୍ଥା କ'ଣ ହୋଇଥାନ୍ତା, ତାହା କଳନା କରିବା ସମ୍ଭବ ନୁହେଁ । ସପନ ଚାପୁଡ଼ାର ସୁଫଳ ବୁଝିଲା ।

ଶିକ୍ଷାଶ୍ରୀ ଲେନ୍, କୁମ୍ଭାରପଡ଼ା, ପୁରୀ–୨

---

**ଖେଳ କୁଇଜ୍‌ର ଉତ୍ତର–**

୧) ଲିଆଣ୍ଡର୍ ପାଏସ୍, ୨) କେଭିନ୍ ପିଟରସନ୍, ୩) ଦୂତୀଚାନ୍ଦ୍, ୪) ରୂପ ସିଂ(ରୂପସିଂ ଷ୍ଟାଡିୟମ୍, ଗୋଆଲିଅର), ୫) ବର୍ମିଂହାମ୍, ୬) ମାରାଡୋନା, ୭) ଜିଗୋରୋ କାନୋ, ୮) ଦକ୍ଷିଣ ଆଫ୍ରିକା, ୯) ସାଇନା ନେହେୱାଲ୍ ।

# ସଠିକ୍ ଉତ୍ତର

ଶ୍ରୀମତୀ ଶରତ କୁମାରୀ ସ୍ୱାଇଁ

''ପାହାଡ଼ ପର୍ବତଘେରା ଘଞ୍ଚ ଜଙ୍ଗଲଟିଏ । ବହୁ ବଡ଼ ବଡ଼ ବୃକ୍ଷସବୁ ଏକପ୍ରକାର ଛନ୍ଦାଛନ୍ଦି ହୋଇ ଆକାଶକୁ ମୁଣ୍ଡଟେକି ରହିଥା'ନ୍ତି । ନିଇତି ସେମାନଙ୍କ ଭିତରେ ପ୍ରତିଯୋଗିତା ଚାଲିଥାଏ କିଏ କେତେ ଉଚ୍ଚକୁ ମୁଣ୍ଡ ଟେକିବ ।''

ଏତକ କହିଦେଇ ପଧାନ ଅଜା ନାତିନାତୁଣୀ–ମାନଙ୍କ ମୁହଁକୁ ଚାହିଁଲେ । ପିଲାଙ୍କ ଭିତରୁ ଖୁଜୁବୁଜୀ ମାମାଲି କହିଲା "ଅଜା ମ ! ଆମେ ମଣିଷମାନେ ସିନା ପ୍ରତିଯୋଗିତା କରୁ... ତମେ କ'ଣ କହିଲଣି – ଗଛଗୁଡ଼ାକ ପ୍ରତିଯୋଗିତା କରୁଥିଲେ ।"

ହସିଦେଇ ଅଜା କହିଲେ, "ଶୁଣ ପିଲାମାନେ ! ତୁମେ ସବୁ ଖେଳରେ, ପାଠରେ, ଗୀତ-ନାଚ, ଚିତ୍ର ଆଙ୍କିବାରେ ପ୍ରତିଯୋଗିତା କର । ସଫଳ ହୋଇ ଖୁସି ଆନନ୍ଦରେ ଫାଟିପଡ଼ । ବଡ଼ ମଣିଷମାନେ ବି ନାମ, ଯଶ, ପଦ-ପଦବୀ, କ୍ଷମତା, ଧନସମ୍ପତ୍ତି କମେଇବାକୁ ପ୍ରତିଯୋଗିତା କରିଥା'ନ୍ତି । ଛୋଟଠାରୁ ବଡ଼ ପର୍ଯ୍ୟନ୍ତ କେହି ପ୍ରତିଯୋଗିତାରେ ଜିତିଗଲେ, ଗର୍ବ ଅହଂକାରରେ ଫାଟିପଡ଼ନ୍ତି; କିନ୍ତୁ ଏହି ବୃକ୍ଷମାନଙ୍କର ସେମିତି ବଡ଼ ହେବାରେ ଗର୍ବ ଅହଂକାର ନଥାଏ । ଅହରହ ଯେଉଁ ପ୍ରତିଯୋଗିତାରେ ଲାଗି ରହିଥା'ନ୍ତି, ସେଥିରେ ଜିତିଯିବାର ବାହାସ୍ଫୋଟ ନ ଥାଏ କି ହାରିଯିବାରେ ଦୁଃଖ ନ ଥାଏ । ଆଲୋକ ପାଇଁ ଆବେଗର ସହ ସେମାନେ ବଢ଼ିଚାଲିଥା'ନ୍ତି । କିଏ ବେଶୀ ଆଲୋକ ପାଇବ, ସେଥିପାଇଁ ସେମାନଙ୍କ ପ୍ରତିଯୋଗିତା ।''

ଚିଣ୍ଟୁ କହିଲା, "ଥାଉ ମ ସେ କଥା ଅଜା ! ତମେ ଗପ କୁହ । କହିଥିଲ ପରା ମଜା ଗପଟିଏ କହିବ ବୋଲି । କୁହନା... ।" ଅଜା କହିଲେ– "ଆରେ ଚଗଲା ! ମୁଁ ତ ସେଇ ଗପ କହୁଛି । ଗପ ଶୁଣିବାବେଳେ ଖାଲି ହୁଁ – ହାଁ – କହିଲେ କ'ଣ ସେଥିରେ ମଜା ଥାଏ ? ତମେ ମଝିରେ ମଝିରେ କିଛି ପଚାରିଲେ ସିନା ଭଲଲାଗିବ ।''

ଚୁପ୍‌ଚାପ୍ ବସିଥିବା ଜାନି କହିଲା– "ମାମାଲି ପଚାରିଲା ବୋଲି ତ ଆମେ ଗଛମାନେ ଆଲୋକ ପାଇଁ ପ୍ରତିଯୋଗିତା କରନ୍ତି ବୋଲି ସୁନ୍ଦର କଥାଟି ଜାଣିପାରିଲେ ।" ଅଜା ଆରମ୍ଭକଲେ ଯେ– ଯେଉଁ ନିଘଞ୍ଚ ଜଙ୍ଗଲ କଥା କହୁଥିଲି, ସେଠି ସବୁବେଳେ ଅନ୍ଧାର । ଗଛଗୁଡ଼ା ଏମିତି ଶାଖାପ୍ରଶାଖା ମେଲାଇ ପତ୍ର ଛନ୍ଦି ଠିଆ ହୋଇଥା'ନ୍ତି ଯେ ଦିନରେ ବି ସେଠି ସୂର୍ଯ୍ୟକିରଣ ପଡ଼େନାହିଁ । ସେ ଅଞ୍ଚଳରେ ଭାରି ଭୟଲାଗେ ଯିବାଆସିବା କରିବାକୁ ।

ସେଠିକାର ପୁରୁଖା ଲୋକେ କୁହନ୍ତି ଜଙ୍ଗଲରେ ଗୋଟାଏ ଅଦ୍ଭୁତ ଜୀବ ପଥିକମାନଙ୍କୁ ଭୟଭୀତ କରାଏ । ତା' ଭୟରେ ସେ ଜଙ୍ଗଲରେ ଏତେବେଶି ପଶୁପକ୍ଷୀ ନ ଥା'ନ୍ତି । ତେଣୁ ବଣୁଆ ପଶୁଙ୍କର ଗର୍ଜନ ଶୁଭେନାହିଁ । ଉଚ୍ଚ ପର୍ବତରୁ ଡେଇଁ ଡେଇଁ ଗଡୁଥିବା ଝରଣାଟିର ଝର ଝର ଶବ୍ଦ ଖାଲି ଯାହା ଶୁଭୁଥାଏ । ଜଙ୍ଗଲର ବାହାରପଟୁ ଦେଖିଲେ ଜଣାପଡ଼େ, ପାଦଚଲା ରାସ୍ତାଟିଏ ଲମ୍ବିଯାଇଛି କାହିଁ କେତେ ଦୂରକୁ ଜଙ୍ଗଲ ଭିତରକୁ । ଲୋକେ କୁହନ୍ତି– ସେଇ ଦୀର୍ଘପଥ ଧାରରେ ଥିବା ଏକ ଲଣ୍ଡା ପାହାଡ଼ ଉପରେ ବସିଥାଏ ଅଦ୍ଭୁତ ଜୀବଟିଏ । ନାରୀର ମୁହଁ । ସିଂହର ଦେହ, ପୁଣି ସାପପରି ଓହଳି ରହିଥାଏ ଗୋଟାଏ ଲହଲହକା ଲମ୍ବା ଲାଞ୍ଜ । ପାଦ ଦୁଇଟା ପିଶାଚର ପାଦ ଭଳି । ଅସୁରୁଣୀ ଭଳି ଭୟଙ୍କର । ସିଂହ ଭଳି ଦେହ ଧରିଥିବାରୁ ତାକୁ ଲୋକେ 'ସିଂହାସୁରୀ' ବୋଲି କହୁଥା'ନ୍ତି ।

ଏକଥା ଜାଣି ପାଖାପାଖି ଅଞ୍ଚଳର ଲୋକେ କେହି ସେ ଜଙ୍ଗଲ ଭିତରକୁ ଯାଆନ୍ତି ନାହିଁ । ଯଦି କେବେ କେହି ଅଜଣା ପଥିକ ସେ ବାଟେ ଯାଇ ସିଂହାସୁରୀର ହାବୁଡ଼ରେ ପଡ଼ିଲା, ତେବେ ଭୂଇଁ ଦୁଲୁକା, କାନଫଟା ଗର୍ଜନ କରି ସିଂହାସୁରୀ ପଥିକଟିକୁ ଅଟକାଇଦିଏ । ଗୋଟାଏ ପ୍ରଶ୍ନ ପଚାରେ । ପଥିକଟି ପ୍ରଶ୍ନର ଉତ୍ତର ଦେଇ ନ ପାରିଲେ, ସିଂହାସୁରୀ ଏକାଡିଆଁରେ ପାହାଡ଼ ଉପରୁ ଡେଇଁ ପଥିକକୁ ମାରି ଖାଇଯାଏ । ଏମିତି ଗୋଟାକୁ ଗୋଟା ମଣିଷ ମାରି ଖାଇ ଆରାମରେ ଥାଏ । ଅଜାଙ୍କ ପାଟିରୁ କଥା ସରିନାହିଁ, ମାମାଲି ପଚାରିଲା– "ଅଜା ! ସିଂହାସୁରୀ ଏମିତି କି ପ୍ରଶ୍ନ ପଚାରୁଥିଲା ଯେ କେହି ପଥିକ ସେ ପ୍ରଶ୍ନର ଉତ୍ତର ଦେଇପାରୁ ନ ଥିଲେ ?" ଅଜା କହିଲେ– ପ୍ରଶ୍ନଟି ଏହିପରି ଥିଲା– ସେ ପ୍ରାଣୀଟି କିଏ, ଯିଏ ପ୍ରଭାତରେ ଚାରିଗୋଡ଼ରେ ଚାଲେ । ଦିନ ବଢ଼ିବା ସଙ୍ଗେ ସଙ୍ଗେ ଦୁଇଗୋଡ଼ରେ ଆଉ ସନ୍ଧ୍ୟାହେଲେ ତିନିଗୋଡ଼ରେ ଚାଲେ ।" ପ୍ରଶ୍ନ ବୁଝି ନ ପାରି ପିଲାମାନେ ମିଟି ମିଟି କରି ଚାହିଁଥା'ନ୍ତି ଅଜାଙ୍କ ମୁହଁକୁ । ଅଜା ପଚାରିଲେ– ତୁମେ କେହି କହିପାରିବ ଯା'ର ଉତ୍ତର ? ସମସ୍ତେ ମୁଣ୍ଡ ହଲେଇ ମନା କଲେ ।

ଅଜା କହିଲେ ଶୁଣ ତେବେ- ଓଡ଼ିପାସ୍ ବୋଲି ଜଣେ ବ୍ୟକ୍ତି ଥିଲେ । ସେ ଯେପରି ନିର୍ଭୀକ, ସେପରି

ବୀର ଓ ବୁଦ୍ଧିମାନ । ଜଙ୍ଗଲର ସେଇ ପଥଦେଇ ସେ ଥରେ ଯାଉଥିଲେ । ସିଂହାସୁରୀ ତାର ପୁରୁଣା ଧାରାରେ ଗର୍ଜନ-ତର୍ଜନ କରି ତାଙ୍କୁ ଅଟକାଇଦେଲା ଓ ଓଡ଼ିପାସ୍‌ଙ୍କୁ ସେଇ ପ୍ରଶ୍ନଟି ପଚାରିଲା । ଓଡ଼ିପାସ୍ ତ ଡରିବାର ଲୋକ ନୁହଁନ୍ତି । ମୁହୂର୍ତ୍ତେ ଭାବି ସେ ସିଂହାସୁରୀକୁ କହିଲେ- "ତୁମ ପ୍ରଶ୍ନର ଉତ୍ତର ମୁଁ ନିଜେ ।" ବଡ଼ ବଡ଼ ଆଖି ତରାଟି, ଦେହଫୁଲାଇ ସିଂହାସୁରୀ ପଚାରିଲା- "କେମିତି ?"

ଓଡ଼ିପାସ୍ କହିଲେ, 'ମୁଁ' ଅର୍ଥାତ୍ ମଣିଷ । ସେଇ ମଣିଷ ଜୀବନର ପ୍ରଭାତ ଅର୍ଥ ଶୈଶବରେ ଆଣ୍ଠେଇ ଆଣ୍ଠେଇ ଯାଏ । ଦୁଇ ହାତ ଓ ଦୁଇ ଆଣ୍ଠୁ ତଳେ ଲାଗିଥାଏ । ଅର୍ଥାତ୍ ଚାରିଗୋଡ଼ରେ ସେ ଚାଲେ ବୋଲି ଧରାଯାଏ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେ ବଡ଼ ହୁଏ ଆଉ ଦୁଇ ଗୋଡ଼ରେ ଚାଲେ । ପୁଣି ଜୀବନସନ୍ଧ୍ୟାରେ, ଯେତେବେଳେ ଶରୀର ଦୁର୍ବଳ ହୋଇଯାଏ, ସେତେବେଳେ ସେ ବାଡ଼ିର ଆଶ୍ରା ନିଏ । ନିଜ ଗୋଡ଼ ଉପରେ ସଂପୂର୍ଣ୍ଣ ଭରସା ତାର ରହେନାହିଁ । ବାଡ଼ି ବା ଯଷ୍ଟିର ସହାୟତାରେ ଚାଲେ । ଦୁଇଗୋଡ଼ ଓ ବାଡ଼ିଟି ତଳେ ଲାଗୁଥିବାରୁ ତାକୁ ତିନିଗୋଡ଼ିଆ ବୋଲି ଲୋକେ କହନ୍ତି ।"

ବୀର ଓଡିପାସ୍‌ଙ୍କର ଏ ଉତ୍ତର ଶୁଣିବାମାତ୍ରେ ସିଂହାସୁରୀ ବିରାଟ ଗର୍ଜନ କରି ପାହାଡ଼ ଉପରୁ ତଳକୁ ଡେଇଁପଡ଼ିଲା । ଚାହୁଁ ଚାହୁଁ ସେଇଠି ତା'ର ପ୍ରାଣବାୟୁ ଉଡ଼ିଗଲା ।

ପିଲାଙ୍କ ମଧ୍ୟରେ କିଛିକ୍ଷଣ ନିରବତା ଛାଇଗଲା । ନିରବତା ଭାଙ୍ଗି ଚିଣ୍ଟୁ ପଚାରିଲା- "କୁହ ଅଜା ! ତା'ପରେ କ'ଣ ହେଲା ?" ଅଜା କହିଲେ- "ଆଉ ହେବ କ'ଣ ? ସିଂହାସୁରୀର ମୃତ୍ୟୁ ଖବର ପାଇ ସେ ଅଞ୍ଚଳର ଲୋକେ ଖୁସି ହୋଇଗଲେ । ସିଂହାସୁରୀ ପ୍ରତି ଥିବା ଭୟ ଦୂର ହୋଇଯିବାରୁ ନିଇତି ଜଙ୍ଗଲକୁ ଯାଇ ଜଙ୍ଗଲଜାତ ପଦାର୍ଥ ସବୁ ସଂଗ୍ରହ କଲେ । ପରିବାର ଓ ଛୁଆପିଲାଙ୍କୁ ଧରି ଖୁସିରେ ରହିଲେ ।

(ଏକ ଗ୍ରୀକ୍ ଲୋକକଥାର ଛାୟାରେ)

୫୫୪/୧୯୬୫, ଶ୍ରୀବିହାର, ପଟିଆ, ଭୁବନେଶ୍ୱର-୭୫୧୦୩୧



ଇସ୍ତ୍ରୀ ଯନ୍ତ୍ରଟିଏ ଥିଲେ, ରୁଟି ଖାଇବାରେ ଆଉ ଅସୁବିଧା କ'ଣ ?



ବୁଦ୍ଧିପରୀକ୍ଷାର ଉତ୍ତର-

**୧.** ଦୁହେଁ ବିପରୀତ ହେଲେ ବି ମୁହାଁମୁହିଁ, ତେଣୁ ବ୍ୟବଧାନ ୧୦କିଲୋମିଟର ହୋଇଥିବ, **୨.** ଆତ୍ମହତ୍ୟା, **୩.** ୮ଟି (୬ଟି ଯାଏ କଳାରଙ୍ଗର ୩ହଳ ହୋଇପାରେ), **୪.** କ) ଳ, ଖ) ମ, **୫.** କ) ଅସ୍ତାବଲ (ଘୋଡ଼ାଶାଳ), ଖ) ମୋଜା, **୬.** ୩୬ (୨୬ଜଣଙ୍କର ହାରାହାରି ବୟସ ୧୧, ଆଗରୁ ୨୫ଜଣଙ୍କ ହାରାହାରି ବୟସ ୧୦ଥିଲା) ।

# କାହାରିକୁ ହାତ ପତାଇବୁ ନାହିଁ

ଶ୍ରୀମତୀ ସୁଷମା ମିଶ୍ର

ଫ୍ରାନ୍ସର ଗୋଟିଏ ଛୋଟିଆ ଗାଁ । ଗାଁରେ ଗୋଟିଏ ଗରିବ ପରିବାର ରହୁଥିଲେ । ଯେତେ ଦୁଃଖ, କଷ୍ଟ ପଡ଼ିଲେ ମଧ୍ୟ ପରିଶ୍ରମ କରି ନିଜର ଜୀବିକା ନିର୍ବାହ କରୁଥିଲେ । ଘରେ ବାପାମା' ଏବଂ ତାଙ୍କର ପିଅର୍ ନାମରେ ଗୋଟିଏ ପୁଅ । ପିତାମାତାଙ୍କ ଆଦର୍ଶରେ ଅନୁପ୍ରାଣିତ ସରଳ ସ୍ୱଭାବ, କୋମଳମତି ବାଳକ ପିଅର୍ କବିତା ଲେଖିବା ସହିତ ଖୁବ୍ ସୁନ୍ଦର ଗୀତ ମଧ୍ୟ ଗାଏ । ଲାଗେ, ସତେ ଯେପରି ତାର ସୁଲଳିତ କଣ୍ଠରେ ସବୁ କିଛି କ୍ଷଣିକ ପାଇଁ ସ୍ଥିର ହୋଇଯାଏ ।

ଏକଦା ପିଅର୍ ମା'ଙ୍କର ସ୍ୱାସ୍ଥ୍ୟ ଖରାପ ହେଲା । ଘରେ ସେମିତି କିଛି ଅର୍ଥ ନ ଥିଲା, ଯାହାଦ୍ୱାରା ଡାକ୍ତରଙ୍କ ପାଖକୁ ଯାଇ ମା'ଙ୍କୁ ଦେଖାଇ ଔଷଧ ଆଣି ମା'ଙ୍କ ସ୍ୱାସ୍ଥ୍ୟ ଭଲ କରିଦେବ । ଈଶ୍ୱରଙ୍କୁ ବ୍ୟାକୁଳ କଣ୍ଠରେ ପ୍ରାର୍ଥନା କରିବା ଛଡ଼ା ତାକୁ ଆଉ କିଛି ବାଟ ଦେଖାଯାଉ ନ ଥାଏ । ଏଣେ ମା'ଙ୍କ ଅବସ୍ଥା ଦିନକୁ ଦିନ ଖରାପ ହେଉଥାଏ ।

ସେତେବେଳେ ଫ୍ରାନ୍ସରେ ମେଲିଆନ୍ ନାମରେ ଜଣେ ପ୍ରସିଦ୍ଧ ଗାୟିକା ଥିଲେ । ପିଅର୍ ତାଙ୍କର ନାମ ଶୁଣି ତାଙ୍କ ନିକଟକୁ ବହୁତ ଶ୍ରମ କରି ବାହାରିଲା ଓ ତାଙ୍କ ପାଖରେ ପହଞ୍ଚିଗଲା । ତାର ଦାରିଦ୍ର୍ୟଭରା ଲୋତକ ଆଖି ଦେଖି ମେଲିଆନଙ୍କ ହୃଦୟ ଦୟାରେ ତରଳିଗଲା । ସେ ଭାବିଲେ ପିଲାଟିର ନିଶ୍ଚୟ ବହୁତ ଅସୁବିଧା ହୋଇଛି । ସେ କିଛି ସାହାଯ୍ୟ ମାଗିବା ପାଇଁ ତାଙ୍କ ନିକଟକୁ ଆସିଛି ସେ ତାକୁ ଆଦରରେ ନିଜ ପାଖକୁ ଡାକିଲେ ଏବଂ ପଚାରିଲେ, ''ବାଳକ ତୁମର ନାମ କ'ଣ ? ତୁମେ କ'ଣ କରୁଛ ?'' ପିଅର୍ ଉତ୍ତରଦେଲା, ''ମୋର ପ୍ରଣାମ ଗ୍ରହଣ କରନ୍ତୁ । ମୋ ନାମ ପିଅର, ମୁଁ ଏକ ନିବେଦନ କରିବା ପାଇଁ ଆପଣଙ୍କ ନିକଟକୁ ଆସିଛି । ମୋର ମା' ଭୀଷଣ ଅସୁସ୍ଥ । ତାଙ୍କୁ ଡାକ୍ତର ଦେଖାଇ ଚିକିତ୍ସା କରିବାପାଇଁ ମୋ ପାଖରେ ଅର୍ଥର ଅଭାବ । ଔଷଧ ଏବଂ ପଥ୍ୟ ଦେବା ପାଇଁ ମୁଁ ଅକ୍ଷମ ।'' ଏହା ଶୁଣିବା ପରେ ମେଲିଆନା କହିଲେ, "କୁହ, କେତେ ଅର୍ଥ ତୁମର ଦରକାର ?'' ପିଅର ମେଲିଆନାଙ୍କ ଉକ୍ତିରେ ବାଧା ଦେଇ କହିଲା– ମୁଁ ବିନା ପରିଶ୍ରମ କରି କିଛି ନେବା ପାଇଁ ଏଠାକୁ ଆସିନାହିଁ । ମୁଁ ଏକ କବିତା ଲେଖିଛି ।



ଆପଣ ଜଣେ ପ୍ରସିଦ୍ଧ ଗାୟିକା ଶୁଣି ଆପଣଙ୍କ ନିକଟକୁ ଆସିଛି । ଆପଣ ମୋ' ଦ୍ୱାରା ଲିଖିତ କବିତାଟିକୁ ଆପଣଙ୍କ ସଂଗୀତସଭାରେ ଗାନ କରିବେ । ଏହାପରେ ଯେତିକି ଉଚିତ ମନେକରିବେ ସେତିକିମାତ୍ର ପାରିଶ୍ରମିକ ମୋତେ ଦେବେ । କାହାରିକୁ ହାତପତାଇ ମାଗିବା ପାଇଁ

ମୋ ମା' ମୋତେ ମନା କରିଛନ୍ତି । ଏହି ନିବେଦନ କରିବା ପାଇଁ ମୁଁ ଆପଣଙ୍କ ପାଖକୁ ଆସିଛି ।

ମେଲିଆନାଙ୍କ ହୃଦୟ ଆହୁରି ତରଳିଗଲା ଏବଂ ସେ ପିଅରକୁ ସେହିଦିନ ତାଙ୍କ ଘରେ ରହିବାକୁ କହିଲେ । ତା' ପରଦିନ ସେ ଏକ ସଙ୍ଗୀତ ସଭାରେ ସେହି କବିତାଟିକୁ ଗାନ କଲେ । ସେହି କବିତାଟି ଅତି କରୁଣ ଥିଲା ଏବଂ ମେଲିଆନା ତାକୁ ଏପରି ସ୍ୱରଦେଇ ଗାନ କଲେ ଯେ ସେ କବିତା ଶୁଣି ତାଙ୍କର ଆଖିରେ ଲୁହ ଆସିଯାଇଥିଲା । ସେହି କବିତାଟି ଶୁଣି ଅନେକ ଶ୍ରୋତା ଉପଯୁକ୍ତ ପୁରସ୍କାର ଦେଲେ । ମେଲିଆନା ସେହି ସମସ୍ତ ପୁରସ୍କୃତ ଅର୍ଥକୁ ଏକତ୍ର କରି ପିଅର୍ ସହିତ ତାର ଅସୁସ୍ଥ ମାତାଙ୍କ ନିକଟରେ ପହଞ୍ଚିଲେ । ସମସ୍ତ ଅର୍ଥକୁ ପିଅର୍ ମାତାଙ୍କୁ ଦେଇ ଏଲିଆନା କହିଲେ– ଆପଣଙ୍କ ଆଦର୍ଶରେ ଅନୁପ୍ରାଣିତ ପିଅର୍ ଏ ସମସ୍ତ ଅର୍ଥର ଅଧିକାରୀ । ପିଅରକୁ କହିଲେ, "ଏ ଅର୍ଥରେ ତୁମେ ମା'ଙ୍କ ଚିକିତ୍ସା କରି ତାଙ୍କ ସ୍ୱାସ୍ଥ୍ୟ ଭଲ କର । ତା'ପରେ ମୋ ସାଙ୍ଗରେ ରହି ତୁମେ ତୁମର ପ୍ରତିଭାକୁ ବିକଶିତ କର ।"

ଗରିବ ହେଲେ ମଧ୍ୟ ମନୁଷ୍ୟ ତଳକୁ ଯାଏନାହିଁ । ଉଚ୍ଚ ମନ ଓ ଆଦର୍ଶ ନୀତି ତାକୁ ଉପରକୁ ଉଠାଏ । ଯେପରି 'କାହାରିକୁ ହାତ ପତାଇବୁ ନାହିଁ' --ମା'ଙ୍କର ଏହି ପଦିଏ କଥା ପିଅର୍‌ର ମନୋବଳକୁ ଉଚ୍ଚ ରଖି, ତା'ର ଜୀବନ ପଥକୁ ବଦଳାଇଦେଇଥିଲା ।

ନୂଆପଡ଼ା, ବାଲିସାହି, ରୁଚିଗଳି, କଟକ– ୭୫୩୦୧୦

---

# କେବଳ ଗଙ୍ଗା ସ୍ନାନରେ ଶରୀର ପବିତ୍ର ହୁଏ ନାହିଁ

ଶ୍ରୀମତୀ କୁମୁଦଲତା ମହାନ୍ତି

ବାରାଣାସୀରେ ଗଙ୍ଗାଘାଟରେ ଖୁବ୍ ଗଭୀର ପାଣି ଥିବାରୁ ଗାଧୋଇବା ପାଇଁ ବ୍ରାହ୍ମଣମାନଙ୍କୁ ଭୟ ଲାଗୁଥାଏ । କୌଣସି ପାତ୍ର ଥିଲେ ଘାଟରୁ ପାଣି ନେଇ ପାହାଚରେ ବସି ଗାଧୋଇ ହୁଅନ୍ତା । ଏହାଦେଖି ସେହି ତୁଠରେ ଗାଧୋଉଥିବା ସନ୍ଥ କବୀର ତାଙ୍କ ଡାଳଟିକୁ ମାଜି ଧୋଇ ବ୍ରାହ୍ମଣମାନଙ୍କ ପାଖକୁ ଜଣକ ହାତରେ ପଠାଇଲେ । କିନ୍ତୁ



ବ୍ରାହ୍ମଣମାନେ କହିଲେ–''ଛି ଛି ତନ୍ତୀର ଡାଳ ସ୍ପର୍ଶ କଲେ ଆମେ ଅପବିତ୍ର ହୋଇଯିବୁ ।'' ଏହା ଶୁଣି କବୀର ଭାବିଲେ, ପ୍ରକୃତରେ ମଣିଷ କେତେ ଅଜ୍ଞାନ ! ସେ ବ୍ରାହ୍ମଣମାନଙ୍କୁ କହିଲେ– ''ମୁଁ ମାଟିରେ ମାଜି ଏବଂ ଗଙ୍ଗାଜଳରେ ଧୋଇ ଏହି ଡାଳଟିକୁ ଦେଲି । ତେବେ ବି ଯଦି ଏହି ଡାଳଟି ପବିତ୍ର ହେଲା ନାହିଁ, ତେବେ ନାନାପ୍ରକାର ଦୁର୍ଭାବନା, ଦୁଃଶ୍ଚିନ୍ତା ଏବଂ ଅପସଂସ୍କୃତିରେ ପରିପୂର୍ଣ୍ଣ ଏଇ ମଣିଷର ଶରୀର କେବଳ ଗଙ୍ଗାସ୍ନାନ ଦ୍ୱାରା କିପରି ପବିତ୍ର ହୋଇଯିବ ?''

କବୀରଙ୍କ ମୁହଁକୁ ବ୍ରାହ୍ମଣମାନେ ଚାହିଁରହିଲେ, କେହି ଜଣେ ମଧ୍ୟ କବୀରଙ୍କ ପ୍ରଶ୍ନର ଉତ୍ତର ଦେଇପାରିଲେ ନାହିଁ । ବାସ୍ତବିକ୍ ଗଙ୍ଗାରେ କେବଳ ସ୍ନାନ କରିଦେଲେ ଆମେ ନିଜକୁ ପବିତ୍ର ହୋଇଗଲୁ ବୋଲି ଭାବିବା ଠିକ୍ ନୁହେଁ । ମଣିଷର ମନ ସର୍ବଦା ସ୍ୱଚ୍ଛ ଓ ପବିତ୍ର ରହିବା ଉଚିତ୍ ।

ନୀଳାଦ୍ରି ବିହାର, ଭୁବନେଶ୍ୱର–୨୧



# ଦୁଇଟି ଗଧର କାହାଣୀ

ଡ. ଶୁଭେଂଦ୍ର ମୋହନ ଶ୍ରୀଚଂଦନ ସିଂ

ଜଣେ ବେପାରୀ ଥିଲେ । ସେ ତୁଳା ବେପାର କରନ୍ତି । ତାଙ୍କର ଦୁଇଟି ଗଧ । ସେ ଗଧମାନଙ୍କ ପିଠିରେ ଲଦନ୍ତି କପା, ପଠାନ୍ତି ଗୋଟେ ନିର୍ଦ୍ଦିଷ୍ଟ ଜାଗାକୁ । ଗଧମାନଙ୍କୁ ସେମିତି ତାଲିମ୍ ବି ଦେଇଥା'ନ୍ତି । ସେମାନେ ମାଲିକଠୁଁ କପା ନେଇ ଯିବେ ଠିକଣା ଜାଗାରେ ପହଞ୍ଚେଇବେ । ଫେରିବେ ମାଲିକଙ୍କ ପାଖକୁ ।

ମାଲିକ ବେଳେବେଳେ କପା ଭିତରେ ଟଙ୍କା ପଇସା ବି ପଠାଉଥାନ୍ତି । ସେଇ ଜଣକ ପାଖକୁ ତା'ଗଧମାନେ ଯାଉଥିଲେ । କପା ଓ ପଇସା ଦେଇଆସୁଥିଲେ । ସେ ବେଳରେ ନୋଟ୍ କି ଚେକ୍ ଆଦି ନଥିଲା । ସବୁ ଥିଲା ନଗଦ ମୁଦ୍ରା । ସେଗୁଡ଼ିକୁ ମୁଣାରେ ରଖାଯାଉଥାଏ । ସେଗୁଡ଼ିକର ଓଜନ ବହୁତ ହେଉଥାଏ । ପୁଣି ଗଲାବେଳେ ରଣଝଣ ଶବ୍ଦ ବି ହେଉଥାଏ । ଖୁବ୍ ବେଶୀ ନହେଲେ ଟିକେ ଟିକେ ହଉଥାଏ ।

ଏମିତି ସେ ଦି'ଗଧ ଚାଲିଥାନ୍ତି । ଉଭୟ ସାଥିହେଇ ଗଲାବେଳେ କଥା ବି ହେଉଥାନ୍ତି । ଯୋଉ ଗଧ ପିଠିରେ ପଇସା ଥାଏ, ସେ ଫୁଲେଇ ହେଇ କହିଲା, ''ଦେଖ୍ ଭାଇ, ତୁ ଯାହା ଭାବନା କାହିଁକି, ମାଲିକ ମୋତେ ବେଶି ଭଲପାଆନ୍ତି । ଦେଖୁନୁ, ମୋ ପିଠିରେ ଟଂକାପୁଟୁଳି ରହିଛି କପା ଭିତରେ । ତେଣୁ ମୋ ସଂଗେ ଏକା ଧାଡ଼ିରେ ନ ଚାଲି ତୁ ମୋ ପଛେ ପଛେ ଆସ । ଆଉ ଗଧଟି କୁନ୍‌ମୁନିଆ ହେଇ ତାହା ହିଁ କଲା । ଏଥିରେ ପ୍ରଥମ ଗଧର ଗର୍ବ ବଢ଼ିଗଲା । ସେ ଟିକେ ଉଲୁସିଗଲା । ଡିଆଁ ମାରି ଖୁସିରେ ରଡ଼ିଲା ।

ସେଇଟା ବଣବାଟ, ସେଠି ଡକାଇତମାନେ ନିଜର ଆଡ୍‌ଡା କରିଥା'ନ୍ତି । ସେମାନେ ଗଧମାନଙ୍କ କଥାବାର୍ତ୍ତା ଶୁଣିଲେ । ଦ୍ୱିତୀୟ ଗଧର ଡିଆଁ ଉକୁସା ଦେଖିଲେ । ଭିତରେ ଥିବା ଟଂକାମୁଣା ଟିକେ ରୁଣୁଝୁଣୁ କଲା । ଡକେଇତମାନଙ୍କ କାନ ବଡ଼ ପତଳା । ସେମାନେ ଖୁବ୍ ଧୀର ଶବ୍ଦ ବି ଶୁଣିପାରନ୍ତି । ତା'ଛଡ଼ା ଜୀବଜନ୍ତୁଙ୍କ ହାବଭାବ ବୁଝିପାରନ୍ତି ।

ସରଦାର କହିଲା, ''ସେ ଆଗରେ ଚାଲୁଥିବା ଗଧଟାକୁ ଧରିଆଣ । ପଛ ଗଧଟିକୁ ଘଉଡ଼େଇଦିଅ । ଦେଖିବା ଏମିତି ଏ ଗଧଟା ହଉଛି କିଆଁ ?'' ଡକାୟତମାନେ ତାକୁ ଧରିଲେ । ସେଇଟା ଟାଣିଓଟାରି ହେଲା । ନିର୍ଘୁମ୍ ପିଟିଲେ ତାକୁ । ଉତାରିଲେ ତା' ପିଠିର ଲଦନ । କ'ଣ ଏତେ ଓଜନ ଲାଗୁଛି । କପାଗୁଡ଼ା ପୁଣି ଏତେ ଓଜନ ! ଲଦନ ଖୋଲାହେଲା । ପଇସା ମିଳିଲା । ଖୁସିରେ ଡକାୟତ ସବୁ ପଇସା ନେଇଗଲେ । ଗଧକୁ ପିଟିପିଟି ତଡ଼ିଦେଲେ । ଗଧଟା କୁଆଡ଼େ ଯିବ ! ତା'ମାଲିକ ପାଖକୁ ନା ତାକୁ ପଠାଯାଇଥିବା ଜାଗାକୁ ? ସେ ଠିକ୍ କରି ପାରୁନଥାଏ । ଶେଷରେ ଖାଲି ପିଠିରେ ମାଲିକ ପାଖେ ପହଞ୍ଚିଲା । ମାଲିକ ଜାଣିଲା, ଗଧ ଉତ୍ପାତ କରିଥିବ । ଗୋଟଗଛ ବାଡ଼େଇ ତାକୁ ତଡ଼ିଦେଲା । ଯା' ଭିତରେ ଅନ୍ୟ ଗଧଟି ଠିକ୍ ଜାଗାରେ ପହଞ୍ଚି ସେଠୁ ପୁଣି ଲଦନ ନେଇ ଫେରିଲା । ମାଲିକ ଖୁସିହେଲା । ହେଲେ, ଏ ଗଧଟି ଖୁସି ହେଲାନି, ତା ବନ୍ଧୁ ଯେ ନାଇଁ ! କ'ଣ କରିବ- ତାକୁ ଝୁରିଲା ।

ଯଦୁମଣି ପାଟଣା, ରେଢ଼ାଖୋଲ

## ଉପବାସ- ଅନେକ ରୋଗ ଆରୋଗ୍ୟ କରେ

ଡା. ଅଜିତାନନ୍ଦ ଗୋସ୍ୱାମୀ

ପ୍ରାଚୀନ ଭାରତରେ ଉପବାସ ରହି ଅନେକ ରୋଗରୁ ଆରୋଗ୍ୟ ହେବା ପ୍ରଥା ଥିଲା । ଏବେ ମଧ୍ୟ ହିନ୍ଦୁ ଓ ମୁସଲମାନ ଲୋକେ ସେମାନଙ୍କର ପର୍ବଦିନମାନଙ୍କରେ ଉପବାସ ରହିଥାନ୍ତି ।

ଉପବାସ ରହିବା ଯୋଗର ଏକ ଅଂଶବିଶେଷ । ସଂସ୍କୃତରେ କୁହାଯାଏ ଯେ ଉପବାସ ପରମ ଔଷଧ । ଉପବାସ ରହିଲେ ଶରୀରରୁ ବିଷାକ୍ତ ପଦାର୍ଥ ନିର୍ଗତ ହୋଇଯାଏ ବୋଲି ଚିକିତ୍ସକ କହିଥା'ନ୍ତି ।

ସୋଭିଏତ୍ ବୈଜ୍ଞାନିକମାନେ କହନ୍ତି ଯେ- ଉପବାସ ରହିଲେ ଶରୀରର କାର୍ଯ୍ୟରତ ଅଙ୍ଗଗୁଡ଼ିକୁ ବିଶ୍ରାମ ମିଳିଥାଏ, ଯାହାଦ୍ୱାରା ସେଗୁଡ଼ିକ କ୍ଳାନ୍ତ ହୋଇ ନ ପଡ଼ି ପୁନଃ ଜୀବିତ ହୋଇଥା'ନ୍ତି; ଅର୍ଥାତ୍ ପୂର୍ଣ୍ଣ ଦକ୍ଷତା ସହ ସକ୍ରିୟ ହୋଇଥା'ନ୍ତି । ଉପବାସ ରହିବା ଦ୍ୱାରା ପ୍ରଣାଳୀଗୁଡ଼ିକ ନିୟନ୍ତ୍ରିତ ହୋଇଥା'ନ୍ତି । ଏହା ଶରୀର ମଧ୍ୟରେ ହେଉଥିବା ମେଟାବୋଲିକ୍ ଆକ୍ସନ୍ ବା ପରିବର୍ତ୍ତନ କ୍ରିୟାକୁ ସକ୍ରିୟ କରିଥାଏ । ଆଉ ମଧ୍ୟ ରକ୍ତପ୍ରବାହ, ଚର୍ମରୋଗ ଓ ଆଲର୍ଜି (ପ୍ରତିକ୍ରିୟା) ପ୍ରଭୃତି ରୋଗଗୁଡ଼ିକୁ ଆରୋଗ୍ୟ କରିଥାଏ । ପେଟ୍ରିସ୍ ଲୁମୁମ୍ବା ବିଶ୍ୱବିଦ୍ୟାଳୟ, ମସ୍କୋରେ ଉପବାସ ଦ୍ୱାରା ବର୍ଷରେ ୧୦.୦୦୦ ରୋଗୀଙ୍କୁ ସୁସ୍ଥ କରିପାରୁଛି । କେଉଁ ରୋଗ ପାଇଁ କେତେ ଦିନ ଉପବାସ ରହିବାକୁ ହେବ, ଏହା ନିର୍ଣ୍ଣୟ କରିଥାଏ । ଏପରିକି ୨୦ରୁ ୪୦ ଦିନ ଉପବାସ ରଖାଇ କଠିନରୋଗ ଚିକିତ୍ସା ହୁଏ ।

ଉପବାସ ଚିକିତ୍ସା– ୧) ଏହାଦ୍ୱାରା ଶରୀରର ଆଭ୍ୟନ୍ତରୀଣ ଅଙ୍ଗଗୁଡ଼ିକୁ ବିଶ୍ରାମ ମିଳିବା ଦ୍ୱାରା ଏଗୁଡ଼ିକ କାର୍ଯ୍ୟ କରିବାକୁ ପୁନରୁତ୍ଥାନ ଶକ୍ତି ଲାଭ କରିଥାନ୍ତି, ୨) ଶରୀରରୁ ବିଷାକ୍ତ ପଦାର୍ଥ ନିର୍ଗତ ହୋଇଯାଏ, ୩) କୋଷଗୁଡ଼ିକର ପୁନଃ ବିଭାଜନ ଉତ୍ତମ ରୂପେ ହୋଇଥାଏ, ୪) ଶରୀରର ବିଭିନ୍ନ ପ୍ରଣାଳୀଗୁଡ଼ିକୁ ନିୟନ୍ତ୍ରଣ କରୁଥିବା ନଳୀବିହୀନ ଏଣ୍ଡୋକ୍ରାଇନ୍ ଗ୍ରନ୍ଥିଗୁଡ଼ିକୁ ସକ୍ରିୟ କରିଥାଏ ।

(ସୌଜନ୍ୟ- ଫାଷ୍ଟିଂ କିଓରସ୍ ମେନି ଡିଜିଜେସ୍ ପୁସ୍ତକ)

ଅଚ୍ୟୁତାନନ୍ଦ ମାର୍ଗ, ଅରୁଣୋଦୟ ନଗର, କଟକ- ୭୫୩୦୧୨

## ସୁନା ସଂସାର

ଶ୍ରୀ ପ୍ରଫୁଲ୍ଲ କୁମାର ସାହୁ

ବରଗଛ ଡାଳେ ବସା ବାନ୍ଧିଥିଲା ଚଢ଼େଇଟିଏ
ନିଇତି ସକାଳୁ କୁଳୁରୁ କୁଳୁରୁ ଗୀତ ସେ ଗାଏ ।
ଟିକି ଡେଣା ଝାଡ଼ି ଦୂର ଆକାଶକୁ ଯାଏ ସେ ଉଡ଼ି
ପିଲାମାନଙ୍କୁ ସେ ନିଜର ବସାରେ ଏକାକି ଛାଡ଼ି ।
ଦିନସାରା ବୁଲି ସଞ୍ଜରେ ଫେରଇ ଆହାର ନେଇ
ସେହି ଆହାରକୁ ନିଜର ପିଲାଙ୍କୁ ଦିଏ ସେ ଖୋଇ ।
ମାଆ ଚଢ଼େଇର ଆଦର ଯତନ ଶରଧା ପାଇ
ପିଲାଏ ବଢ଼ିଲେ ଆକାଶେ ଉଡ଼ିଲେ ଆନନ୍ଦ ହୋଇ ।
ଛୋଟ ଥିଲେ ଦିନେ ବଡ଼ ସେ ହୋଇଲେ ପାଇଲେ ବଳ
ଦଳବାନ୍ଧି ନିତି ଆକାଶେ ଦେଖାନ୍ତି ନିଜର ଖେଳ ।
ମାଆ ଚଢ଼େଇଟି ଖୁସିରେ ନାଚିଲା ପିଲାଙ୍କୁ ଦେଖି
ଭାବିଲା ସେ ଏହି ସଂସାରରେ ଏକା ନିଜେ ସେ ସୁଖୀ ।
ପିଲାଙ୍କ ଖୁସିରେ ବାପାମାଆଙ୍କର ଖୁସି ଅପାର
ସଭିଙ୍କ ଖୁସିରେ ଗଢ଼ା ହୁଏ ସିନା ସୁନା ସଂସାର ।

ଭାରପ୍ରାପ୍ତ ପ୍ରଧାନଶିକ୍ଷକ, ରାଧାକୃଷ୍ଣ ନୋଡାଲ ଉ.ପ୍ରା. ବିଦ୍ୟାଳୟ, ଓସ୍ତପୁର, ନିଶ୍ଚିନ୍ତକୋଇଲି, କଟକ- ୭୫୪୨୦୭

ଉତ୍ତର- ଅମୃତଭଣ୍ଡା

# ପ୍ରେମର ସୁଗନ୍ଧ

ଡାକ୍ତର ନିମାଁଇ ଚରଣ ପରିଜା

ବହୁବର୍ଷ ତଳର କଥା । ଜଣେ ବୁଦ୍ଧିମାନ, ଦୟାଶୀଳ ଓ ସଂଭ୍ରାନ୍ତ ରାଜା ଏକ ରାଜ୍ୟ ଶାସନ କରୁଥିଲେ । ଦିନେ ହିମାଳୟରୁ ଜନୈକ ସନ୍ନ୍ୟାସୀ ରାଜାଙ୍କ ପାଖକୁ ଆସିଲେ । ସିଏ ରାଜା ଓ ରାଜ୍ୟର ପ୍ରଜାମାନଙ୍କୁ ଆଶୀର୍ବାଦ ଦେବାକୁ ଇଛାକଲେ ।

ସନ୍ନ୍ୟାସୀଜଣଙ୍କ ଯେତେବେଳେ ରାଜାଙ୍କୁ ଭେଟିଲେ, କହିଲେ, "ରାଜନ ମୁଁ ତୁମକୁ ଗୋଟିଏ ଭଲଜିନଷ ଉପହାର ଦେବାକୁ ଚାହେଁ ।'' ଏହା କହି ସେ ଆଣିଥିବା ଏକ ତୀକ୍ଷ୍ଣ ଖଡ଼୍ଗ ବାହାରକଲେ । ସନ୍ନ୍ୟାସୀ ରାଜାଙ୍କୁ ଚାହିଁ କହିଲେ, ''ମୁଁ ତୁମକୁ ଗୋଟିଏ ଖଣ୍ଡା ଉପହାର ଦେବାକୁ ଚାହେଁ । ଏହା ବଳରେ ତୁମେ ରାଜ୍ୟମାନ ଜୟକରି ଜୈତ୍ରବାନା ଉଡ଼ାଇବ । ଏହା ତୁମକୁ ପୃଥିବୀର ବିଜେତା ବୋଲି ଘୋଷଣା କରାଇବ ।'' ରାଜା କହିଲେ- ହଁ ମହର୍ଷି ! ମୁଁ ଦୁଃଖର ସହିତ କହୁଛି ମୋର ରାଜ୍ୟ ଜୟ କରିବାର ଲାଳସା ନାହିଁ । ମୁଁ ଚାହେଁ ମୋ ପ୍ରଜାମାନଙ୍କର ସୁଖ, ଶାନ୍ତି ଓ ସମୃଦ୍ଧି । ମୁଁ ରାଜ୍ୟ ଜୟ କଲେ ମୋର ପ୍ରଜାମାନଙ୍କ କ'ଣ ମଙ୍ଗଳ କରିବି ? ମୁଁ ଯୁଦ୍ଧକୁ ଘୃଣାକରେ, ଯୁଦ୍ଧ ସ୍ତ୍ରୀ ଲୋକମାନଙ୍କୁ ବିଧବା କରେ । ପିଲାମାନଙ୍କୁ ପିତୃହୀନ କରି ଅନାଥ କରାଏ । ବୟସ୍କ ଓ ବୃଦ୍ଧମାନଙ୍କୁ ସନ୍ତାନହରା କରାଇଥାଏ ।

--ତା' ହେଲେ ରାଜନ୍... ଦୀର୍ଘଶ୍ୱାସ ପକାଇ ସନ୍ନ୍ୟାସୀ ଜଣଙ୍କ କହିଲେ- ମୁଁ ତୁମପାଇଁ ତେବେ ଆଉ ଏକ ପୁରସ୍କାର ଆଣିଛି । ଏହା କହି ସେ ନିଜ ପକେଟ୍‌ରୁ ଗୋଟିଏ ଝଟକୁଥିବା ହୀରାଖଣ୍ଡ ରାଜାଙ୍କୁ ଦେଖାଇଲେ । ରାଜନ ! ଏହି ହୀରାଖଣ୍ଡକ ନିଅ । ଏହା ତୁମକୁ ପୃଥିବୀର ସର୍ବଶ୍ରେଷ୍ଠ ଧନୀ ରାଜା ଭାବେ ପ୍ରତିପାଦିତ କରିବ । ମୁଣ୍ଡ ହଲାଇ ରାଜା କହିଲେ, "ଆଜ୍ଞା, ମୋର ପୃଥିବୀର ଜଣେ ଧନୀରାଜା ହେବାକୁ ଆଗ୍ରହ ନାହିଁ ।" ଏହା ଶୁଣି ସନ୍ନ୍ୟାସୀ ଜଣଙ୍କ କହିଲେ– ତା'ହେଲେ ତୁମର ପାର୍ଥିବ ବସ୍ତୁ ପ୍ରତି ଆଦୌ ଆଗ୍ରହ ନାହିଁ । ତେଣୁ ମୁଁ ତୁମକୁ ଏକାଥରକେ ସ୍ୱର୍ଗକୁ ନେଇଯିବି । ରାଜା ସଙ୍ଗେ ସଙ୍ଗେ ଉତ୍ତରଦେଲେ, ''ସନ୍ନ୍ୟାସୀ ମହାରାଜ ! ମୋ ପାଇଁ ମୋ ରାଜ୍ୟର ମାଟି ହେଉଛି ମା ଓ ମାତୃଭୂମି ମୋ ପାଇଁ ସ୍ୱର୍ଗ ।'' ଏବେ ସାଧୁଜଣଙ୍କ ରାଜାଙ୍କ ଆଡ଼କୁ ଚାହିଁଲେ ଓ ଘୋଷଣା କଲେ "ରାଜନ୍, ମୁଁ ତୁମ ଉପରେ ବହୁତ ଖୁସି । ତୁମଭଳି ଜଣେ ଉଚ୍ଚକୋଟୀର ରାଜା ଓ ତୁମର ଉନ୍ନତ ଚିନ୍ତାଧାରାରେ ମୁଁ ପ୍ରଭାବିତ । ତୁମ ପ୍ରତି ମୋର ଆଶୀର୍ବାଦ ସବୁଦିନ ପାଇଁ ରହିଛି । ମୁଁ ତୁମକୁ ଏକ ସ୍ୱତନ୍ତ୍ର ପୁରସ୍କାର ଦେବାକୁ



ରହେଁ । ଏହା କହି ସେ ନିଜ ପକେଟ୍‌ରୁ ଏକ ମଞ୍ଜି ପ୍ୟାକେଟ୍ ବାହାର କଲେ ଓ କହିଲେ-- ଏଗୁଡ଼ିକ ଏକ ପ୍ରକାର ସ୍ୱତନ୍ତ୍ର ଫୁଲମଞ୍ଜି । ଏହି ମଞ୍ଜିଗୁଡ଼ିକ ଲଗାଇବ । ତୁମ ରାଜ୍ୟର ସବୁଆଡ଼େ ଏହାକୁ ଲଗାଇବାର ବନ୍ଦୋବସ୍ତ କରିବ । ଯେତେବେଳେ ଏଥିରେ ଫୁଲ ଫୁଟିବ, ସେ ପ୍ରେମର ସୁଗନ୍ଧ ସବୁଆଡ଼କୁ ବିଚ୍ଛୁରିତ କରିବେ । ଯେଉଁମାନେ ଏହି ସୁଗନ୍ଧ ଆଘ୍ରାଣ କରିବେ, ସେମାନେ ସେମାନଙ୍କର ଲୋକମାନଙ୍କ ସହିତ ପ୍ରେମ, ସଦ୍‌ଭାବ ଓ ଭ୍ରାତୃଭାବରେ ଜୀବନ ଯାପନ କରିବେ ।''

ଏହା ଶୁଣି ରାଜା ସେଇ ସନ୍ୟାସୀଙ୍କୁ ପ୍ରଣତି ଜଣାଇଲେ ଓ ତାଙ୍କର ଆଶୀର୍ବାଦ ଭିକ୍ଷା କରି କହିଲେ, "ହେ ପୁଣ୍ୟବନ୍ତ ମହର୍ଷି ! ଏହି ହେଉଛି ଜଣେ ଶାସକ ପାଇଁ ସବୁଠାରୁ ଉତ୍ତମ ଦାନ । ମୁଁ ଆପଣଙ୍କ ପ୍ରତି ଗଭୀର କୃତଜ୍ଞତା ଜଣାଉଛି । ଜଣେ ରାଜା ପାଇଁ ତାର ରାଜ୍ୟ ଓ ପ୍ରଜା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ରାଜ୍ୟର ସୁଶାସନ ରାଜାଙ୍କର ପରମ କର୍ତ୍ତବ୍ୟ । ଆପଣଙ୍କ ଉପଦେଶ ମୁଁ ଅକ୍ଷରେ ଅକ୍ଷରେ ପାଳନ କରିବି ।''

ଅରୁଣୋଦୟ ନଗର, କଟକ-୧୨



ମୋନାଲିସା ନାୟକ, ସପ୍ତମ ଶ୍ରେଣୀ
ସରକାରୀ ବାଳିକା ଉଚ୍ଚ ବିଦ୍ୟାଳୟ, ଆନନ୍ଦପୁର



ଜ୍ୟୋତି ନାୟକ, ଅଷ୍ଟମ ଶ୍ରେଣୀ
ଶୈଳଙ୍ଗ ନୋଡାଲ ଉ.ପ୍ରା. ବିଦ୍ୟାଳୟ

ପିଲାଏ, ହୋଲିରେ ଏଭଳି ବିପଦପୂର୍ଣ୍ଣ ଖେଳ ଖେଳିବାପାଇଁ ଚେଷ୍ଟା କରନାହିଁ । ମଟରସାଇକେଲରେ ବସି ପିଚକାରୀ ମାରିବା ଦ୍ୱାରା ଦୁର୍ଘଟନା ହେବାର ସମ୍ଭାବନା ରହିଛି ।
ବିଭିନ୍ନ କେମିକାଲ ମିଶ୍ରିତ ରଙ୍ଗରେ ହୋଲି ଖେଳନାହିଁ । ସେଗୁଡ଼ିକ ଚର୍ମ ପାଇଁ କ୍ଷତିକାରକ । ଆନନ୍ଦ ଉତ୍ସବ କରିବା ପାଇଁ ମନା ନାହିଁ; ମାତ୍ର ଏହାଦ୍ୱାରା ବିପଦକୁ ଡାକିଆଣିବା ଠିକ୍ ନୁହେଁ ।

# ନିୟମ ପାଳିଲେ ରାଜା

ଡକ୍ଟର ତ୍ରିନାଥ ପଟ୍ଟନାୟକ

ବହୁଦିନ ତଳେ ମଗଧରେ ଜଣେ ରାଜା ରାଜତ୍ୱ କରୁଥିଲେ । ତାଙ୍କର ନାମ ବିମ୍ବିସାର । ସେ ଗୌତମବୁଦ୍ଧଙ୍କର ପ୍ରିୟ ଶିଷ୍ୟ ଥିଲେ । ଜଣେ ସୁଶାସକ ମଧ୍ୟ । ତାଙ୍କର ରାଜଧାନୀର ନାମ ରାଜଗୃହ ।

ସେହି ସମୟରେ ନଗର ଉପରେ ଏକ ବିଚିତ୍ର ବିପଦ ପଡ଼ିଲା । ନିୟମିତ ରୂପେ କୌଣସି ନା କୌଣସି ଘରେ ସବୁଦିନ ନିଆଁ ଲାଗିଲା । ନଗରବାସୀଙ୍କୁ ସାବଧାନ କରିବା ସତ୍ତ୍ୱେ ସେମିତି ନିଆଁ ଲାଗୁଥାଏ । ଘରଦ୍ୱାର ପୋଡ଼ିବାରୁ ଲୋକମାନେ ଦାଣ୍ଡର ଭିକାରି ହେବାକୁ ଲାଗିଲେ ।

ଏକଥା ସମ୍ରାଟ ବିମ୍ବିସାର ଜାଣିଲେ । ବହୁତ ଚିନ୍ତିତ ହୋଇଉଠିଲେ । ଖୋଜଖବର ନେଲେ । ଏପରିକି ଗୁଇନ୍ଦା ଲଗାଇଲେ; ମାତ୍ର ନିଆଁ ଲାଗିବାର କାରଣ କ'ଣ ଜାଣି ପାରିଲେନି । ବିମ୍ବିସାର ଭାବିଲେ ଯଦି ନଗରବାସୀ ସାବଧାନ ରୁହନ୍ତେ, ନିଜ ଘରକୁ ରକ୍ଷାକରନ୍ତେ, ତେବେ ଏମିତି ନିଆଁ ଲାଗନ୍ତା ନାହିଁ । ନିଆଁ ଲାଗିବା ନିୟନ୍ତ୍ରଣ ହୋଇପାରନ୍ତା ।

ସମ୍ରାଟ ସାରା ନଗରରେ ଘୋଷଣା କରିଦେଲେ ଯେ, "ଯେଉଁ ଲୋକର ଘରେ ନିଆଁ ଲାଗିବ, ସେ ଆଉ ନଗରରେ ରହିପାରିବ ନାହିଁ । ନଗର ବାହାରେ ଶ୍ମଶାନରେ ଯାଇ ରହିବ ।"

ଦୁର୍ଯ୍ୟୋଗକୁ ରାଜଭବନରେ ଦିନେ ନିଆଁ ଲାଗିଗଲା । ରାଜା ତ ନିୟମ କରିଛନ୍ତି, ବାଧ୍ୟ ହୋଇ ରାଜଭବନ ଛାଡ଼ି ଶ୍ମଶାନରେ ରହିବା ପାଇଁ ପ୍ରସ୍ତୁତ ହେଲେ । ମନ୍ତ୍ରୀ ଓ ପାରିଷଦ ରାଜାଙ୍କୁ କିପରି ଶ୍ମଶାନ ନ ଯିବାକୁ ପଡ଼ିବ, ସେଥିନିମନ୍ତେ ଉପାୟ ସବୁ ଖୋଜିବାକୁ ଲାଗିଲେ ।

କିନ୍ତୁ ସମ୍ରାଟ ସେମାନଙ୍କ କଥା ମାନିଲେ ନାହିଁ । ରାଜଭବନ ତ୍ୟାଗ କରିବା ନିମନ୍ତେ ପ୍ରସ୍ତୁତ ହେଲେ ।

ସମ୍ରାଟ ବିମ୍ବିସାର ସଭାସଦ୍‌ମାନଙ୍କୁ କହିଲେ– ମୋର ଆଦେଶ ପ୍ରତ୍ୟେକ ସହରବାସୀଙ୍କ ପ୍ରତି ଥିଲା । ସହଜେ ମୁଁ ଏ ନଗରର ଶାସକ ଓ ନିବାସୀ । ଏଣୁ ପ୍ରତ୍ୟେକଟି ଆଦେଶକୁ ମୁଁ ପ୍ରଥମେ ପାଳନ କରିବା ଉଚିତ । ମୁଁ ନିଜେ ଜାରି କରିଥିବା କୌଣସି ନିୟମକୁ ଉଲଂଘନ କରିବାକୁ ଚାହୁଁନାହିଁ । ଯଦି ରାଜା ନିଜେ ନିୟମ ଓ ମର୍ଯ୍ୟାଦାକୁ ପାଳନ ନ କରିବେ, ତେବେ ପ୍ରଜାମାନେ କାହିଁକି ଅନୁଶାସନକୁ ପାଳନ କରିବେ ?

ରାଜା ବାଧ୍ୟ ହୋଇ କେତେଦିନ ଶ୍ମଶାନରେ ବାସ କଲେ । ନଗରରୁ ଆପେ ଆପେ ନିଆଁ ଲାଗିବା ବନ୍ଦ ହୋଇଗଲା ।

ନିଆଳି, କଟକ- ୭୫୪୦୦୪




ଫ୍ଲୋରିଡ଼ାରେ ଗୋଟିଏ ସ୍କୁଲରେ ୧୭ ଜଣ ପିଲା ମାରାତ୍ମକ ଭାବରେ ନିହତ ହୋଇଛନ୍ତି ଗୋଟିଏ ବାଳକର ଗୁଳିରେ । ଏମିତି ଆଶ୍ଚର୍ଯ୍ୟଜନକ ଖବର ଆଖିରେ ପଡ଼ିଲେ ଦେହ ଶିତେଇଯାଏ । ଏତେ ଛୋଟ ପିଲା; ଅଥଚ ତାର ମସ୍ତିଷ୍କରେ କେତେ କ୍ରୋଧ, ଘୃଣା, ଅସହ୍ୟତା, ଈର୍ଷା କେମିତି ପ୍ରବେଶ କଲା ?

ବିଶ୍ୱାସ ଲାଗୁନି, ଏ କଥା ସତ ନ ହୋଇଥାଉ । ସ୍ୱପ୍ନ ହୋଇଥା'ନ୍ତା କି ? ସେ ନିରୀହ ପିଲାଗୁଡ଼ିକର ସରଳ ମୁହଁ ସବୁ ଆଖି ଆଗରେ ନାଚିଯାଏ । ନିରୀହ, ସରଳ ପିଲାଟିଏ ତାରି ଭଳି ସରଳ ପିଲାଙ୍କୁ ହତ୍ୟା କରିଛି ! କି ଅଦ୍ଭୁତ କଥା !

ପିଲାଟିର ସରଳତା ଏତେ ବିଷାକ୍ତ କେମିତି ହୁଏ ? ସେହି ବିଷୟରେ ମୁଁ ବେଳେବେଳେ ଚିନ୍ତାକରେ । ଆମ ଘରେ ଯେଉଁ ସାହାଯ୍ୟକାରୀ ସ୍ତ୍ରୀ ଲୋକଟି ଅଛି-- ତାର ପୁଅ, ବୋହୂ, ନାତୁଣୀ ୨ଟି । ବଡ଼ ନାତୁଣୀଟି ସ୍କୁଲ ଯିବା ବୟସ ହେଲାଣି; ମାତ୍ର ଯାଉନି । ଘରେ ସବୁବେଳେ ବାପା, ମା', ଜେଜିମା'ଙ୍କ ଭିତରେ ଗଣ୍ଡଗୋଳ । ବାପା ମଦ, ଗଞ୍ଜେଇ ଖାଏ । ପିଲା ଦୁଇଟି ସବୁ ଶୁଣନ୍ତି, ସବୁ ଜାଣନ୍ତି । ଭାଷାରେ ଶାଳୀନତା ନାହିଁ । ଯାହା ଦେଖୁଛନ୍ତି, ଶୁଣୁଛନ୍ତି, ତାହା ହିଁ ସେମାନେ ଆପଣାନ୍ତି । ଦେଖି ଦେଖି ମନ ବିଷାକ୍ତ ହୋଇଯାଏ ।

ଏ ହେଲା ଗୋଟିଏ କାରଣ । ଆଉ ଗୋଟିଏ କାରଣ ହେଲା-- ପିଲାଟି ଭଲ ପାଠ ନ ପଢ଼ିବାରୁ ଶିକ୍ଷକମାନଙ୍କର କ୍ରୋଧର ଶିକାର ହେଲା । ଅନ୍ୟ ପିଲାମାନେ ତାସଲ୍ୟ କଲେ । ଦିନକୁ ଦିନ ସେ ସ୍କୁଲ ପ୍ରତି ବୀତସ୍ପୃହ ହୋଇଗଲା । ଆଉ ଜଣେ ତାର ସାଥୀ ହେଲା । ତାକୁ ଦୁଷ୍ଟାମି କରିବାକୁ ପ୍ରବର୍ତ୍ତାଇଲା । ହୁଏ ତ କହିଥିବ, "କାହିଁକି ସାର୍ ଆମକୁ ଗାଳିଦେବେ ? ଆମେ କ'ଣ ମଣିଷ ନୁହେଁ ? ଯିଏ ଭଲ ପାଠ ପଢ଼ିଲା, ସିଏ ମଣିଷ ! ତୁ କିଛି ଖାତିରି କରନା, ଦେଖିବା ସାର୍ କ'ଣ କରୁଛନ୍ତି !"

ସେ ତାହା ହିଁ କଲା । ପର ମୁହୂର୍ତ୍ତରେ ତାକୁ ସ୍କୁଲରୁ ବାହାରି ଯିବାକୁ ପଡ଼ିଲା । ସେତେବେଳେ ତାର କ୍ରୋଧର ସୀମା ଟପିଗଲା । ତା'ପରେ ସେ କ୍ରୋଧିତ ହୋଇ ଯାହା ଇଚ୍ଛା ହେଲା, ତା' କଲା ।

ସାଧାରଣ ଏମିତି ହୁଏ ବୋଲି ମୋର ଧାରଣା । ମୁଁ ଲକ୍ଷ୍ୟ କରିଛି– ଅନେକ ଦୁଷ୍ଟ ପିଲା ବେଳେବେଳେ ସୁଧୁରି ଯାଆନ୍ତି । କାରଣ ହୁଏତ କାହାର ସ୍ନେହବୋଳା କଥା, କାହାର ତ୍ୟାଗ ତାକୁ ପରିବର୍ତ୍ତନ କରିବାରେ ସାହାଯ୍ୟ କରିଥିବ ।

ଜନ୍ମରୁ ତ କେହି ଦୁର୍ଦାନ୍ତ ହୋଇ ନ ଥାନ୍ତି । ସେମାନଙ୍କର ମସ୍ତିଷ୍କରେ ହିଂସା, ଦ୍ୱେଷ, କ୍ରୋଧ ଥାଇ ତ ସେମାନେ ଜନ୍ମ ହୋଇ ନ ଥାନ୍ତି ! ତେଣୁ ଆମର ଭାବିବା କଥା– ଏମିତି ପରିବେଶ ଆମେମାନେ ଘରେ, ସ୍କୁଲରେ ଓ ବାହାରେ ସୃଷ୍ଟିକରୁ ଯେ ସେ ଦୂଷିତ ତରଙ୍ଗ ତା' ମଧ୍ୟରେ ଧୀରେ ଧୀରେ ପ୍ରବେଶ କରି ତାକୁ ବିଭ୍ରାନ୍ତ କରିଦିଏ । ଯାହାଦ୍ୱାରା ସେ ସମାଜର, ପରିବାରର, ବିଦ୍ୟାଳୟର ଯେ କୌଣସି କ୍ଷତି କରିବାକୁ ପଛାଏ ନାହିଁ ।

ଇଂରାଜୀ ସିନେମାଟିଏ ଦେଖିଲି ! ଠିକ୍ ଏହିଭଳି ସୁନ୍ଦରୀ ଝିଅଟିକୁ ଅନାଥାଶ୍ରମରୁ ମା'ବାପା ଆଣିଲେ । ଘରେ ରଖି ପାଳିଲେ । କିଏ ଜାଣିଥିଲା ସିଏ ଏଭଳି ଭୟଙ୍କର କାଣ୍ଡ କରି ବସିବ ? ତାର ନୂଆ ମା'କୁ ତ ସେ ଆଦୌ

ଭଲପାଏନି । ବାପାଙ୍କୁ କେବଳ ଭଲପାଏ ଓ ତାଙ୍କରି କଥା ହିଁ ଶୁଣେ । ତାର ବଡ଼ଭାଇ ଓ ଭଉଣୀଙ୍କୁ ମଧ୍ୟ ଘୃଣା କରେ । କାରଣ କିଛି ଜଣାପଡ଼େନି । ଦିନେ ମା' ଓ ଭାଇଙ୍କ ସାଙ୍ଗେ ଏକ ଜାଗାକୁ ସେ ବୁଲିଯାଇଥିଲା । ସେଠାରେ ସେ ବାହାରକୁ ଆସି ତା'ର ମା' ଓ ଭାଇ ରହୁଥିବା ଘରେ ନିଆଁ ଲଗେଇଦେଲା । କୌଣସିମତେ ମା' ବାହାରକୁ ଆସିଲେ, ମାତ୍ର ପୁଅଟି ପୋଡ଼ିହୋଇଗଲା । କି ଭୟଙ୍କର ତା'ର ଚିନ୍ତାଧାରା ! ଆଶ୍ରୟଦାତ୍ରୀ ବାପାମା' କାହିଁକି ଭାବିବେ ଯେ ଛୋଟ ଝିଅଟିକୁ ଆମେ ଘରକୁ ଆଣି ଆଶ୍ରୟ ଦେଇଛୁ, ସେ ଏଭଳି ଚିନ୍ତାଧାରାର ହୋଇଥିବ ।

ଏତେ କଅଁଳିଆ ପିଲାଟି ଏତେ ହିଂସ୍ର କେମିତି ହେଲା ? ମୁଁ ଅନୁଭବ କରିଛି– ଖୁବ୍ ଦୁଷ୍ଟ, ଖୁବ୍ ହିଂସ୍ର ପ୍ରକୃତିର ଶିଶୁ-କିଶୋରଙ୍କର ଅନ୍ତର ମଧ୍ୟରେ ଗୋଟିଏ କୋଣରେ ସୁନ୍ଦର, ସ୍ୱଚ୍ଛ, ପବିତ୍ର ଦୀପଟିଏ ଜଳୁଥାଏ, ଲିଭୁଥାଏ । କେବଳ ଆମର ଦୂରଦୃଷ୍ଟି ଅଭାବରୁ ଆମେ ତାହାକୁ ଅନୁଭବ କରିପାରୁନାହିଁ ।

ସେ ଅନ୍ୟର ଦୁଃଖରେ ଦୁଃଖୀ ହେବାର ମୁଁ ଲକ୍ଷ୍ୟ କରିଛି । ଅନ୍ୟକୁ ସାହାଯ୍ୟ କରିବାର କରୁଣାଟିକେ ମୁଁ ତା' ଭିତରେ ଅନୁଭବ କରିଛି ।

ମୋର କହିବା କଥା ହେଲା– ଯେଉଁ ଅରୁଚିକର ପରିବେଶର ଦୂଷିତ ଅଣୁକଣା ସବୁ ତା' ମଧ୍ୟରେ ପ୍ରବେଶ କରେ, ସେ ସବୁ ତା'ର ଅନ୍ତରର ଦୀପର ତେଜକୁ ଧିମେଇଦିଅନ୍ତି, ଘୋଡ଼େଇଦିଅନ୍ତି । ଆମର ଆପ୍ରାଣ ଚେଷ୍ଟା, ସ୍ନେହବୋଳା କଥାରେ ଆମେ ସେ ଦୂଷିତ ଅଣୁକଣାକୁ ଉଡ଼େଇଦେଇ ପାରିବା– ଏହା ମୋର ନିଜସ୍ୱ ଧାରଣା ଓ ଅନୁଭବ ।

ବୋଧହୁଏ ଶିଶୁଟି ପାଇଁ ସ୍ନେହର ଅଭାବ ହିଁ ତାକୁ ବିପଥଗାମୀ କରାଏ । ସେଥିପାଇଁ ହିଁ ଆଜିକାଲି ଶିଶୁ-କିଶୋରମାନେ ଦିନକୁ ଦିନ ଭୟଙ୍କର କାଣ୍ଡ ସବୁ କରି ବସୁଛନ୍ତି । ତେଣୁ ଆମରି ଉପରେ ଆମର ଶିଶୁ, କିଶୋରଙ୍କର ଭବିଷ୍ୟତ ଯେ ନିର୍ଭର କରେ, ତାହା ଆମକୁ ହୃଦୟଙ୍ଗମ କରିବାକୁ ପଡ଼ିବ । ଚିନ୍ତା କରିବାର ସମୟ ଉପନୀତ ।

**--ଅନସୂୟା ନନ୍ଦ**

---

# ମୁନୁସ୍ ଗୁଟେ ହେଇ ରହ

ଶ୍ରୀ ଗୋବିନ୍ଦଚନ୍ଦ୍ର ତ୍ରିପାଠୀ

ଖେଚ୍‌ଡେ ଖେଚ୍‌ଡେ କାହାକେ କେଭେ
ନାଇଁଦେବୁ ଅପମାନ୍,
ଗୁରୁ ଗୁରୁଜନ୍ ଯାହାକେ ଦେଖିଲେ
ଦଉଥିବୁ ସନ୍‌ମାନ ।
ଧୁଇଲ୍ ମାଏଟ୍ ବଲି ଭାବ୍‌ବୁ ଦେଖି
ଦୁସ୍‌ରା ଲୁକର୍ ଧନ୍,
ଫୁପ୍‌ଲିଆ ଧନେ ଧନୀ ହେବାକେ
ନାଇଁ ବଲାବୁ ମନ୍ ।
କାହାର୍ ଘର୍ କେଭେ ନାଇଁ ଭାଁଗ୍‌ବୁ
ନାଇଁ ହସ୍‌ବୁ ଦେଖି ଦୁଃଖ୍,
ପରହର୍ ଦୁଃଖେ ଛନେ କାନ୍ଦି ପାର୍‌ଲେ
ପାଏବୁ ପରମ୍ ସୁଖ୍ ।
ପଶୁ ବାଗିର୍ ଇନେ ଜିଁଜାଗି କରି
କାଏଁ ଲାଭ୍ ଅଛେ କହ ?
ସଧାବେଲେ ବାବୁ ମୁନୁସ୍ ଭେଲିଥି
ମୁନୁସ୍ ଗୁଟେ ହେଇ ରହ ।

ଭାରତୀ କୁଟୀର, ଡୁଙ୍ଗୁରିପାଲି-୭୬୭୦୨୩, ସୁବର୍ଣ୍ଣପୁର

# ଢାସଢ୍ଧ

### ଶ୍ରୀ ଚିକୁନ୍ ପଣ୍ଡା

ନିଘଞ୍ଚ ଜଙ୍ଗଲର ପରିବେଶଟା ହଠାତ୍ କେମିତି ବିଗିଡ଼ିଗଲା । କେହି କିଛି ବୁଝିବା ଆଗରୁ ପଶୁଠାରୁ ପକ୍ଷୀ ପର୍ଯ୍ୟନ୍ତ ସମସ୍ତେ ନିଜ ନିଜର ଆହାର ନେଇ ଧାବମାନ ଅବସ୍ଥାରେ ଥିଲେ । ପକ୍ଷୀମାନଙ୍କର ଚେଁ ଚେଁ ଶବ୍ଦରେ ଜଙ୍ଗଲଟା ପୂରା କୋଳାହଳପୂର୍ଣ୍ଣ ହୋଇଉଠିଥିଲା । ଆଉ ପଶୁମାନଙ୍କ ଅବସ୍ଥା ନ କହିଲେ ଭଲ ।

ପଶୁମାନଙ୍କର ଭିତରେ ସବୁଠାରୁ ଚତୁର କୁହାଯାଉଥିବା ପ୍ରାଣୀ ବିଲୁଆ ମଧ୍ୟ ପୂରା ହଡ଼ବଡ଼େଇ ଯାଇଥାଏ; କାରଣ ତାର ଦୁଇଟି କୋମଳମତି ଶିଶୁକୁ ନେଇ ସେ କୁଆଡ଼େ ଯିବ ବୋଲି ଚିନ୍ତା କରୁଥାଏ । ସେଇବାଟ ଦେଇ ବାଘ ଆହାର ଅନ୍ୱେଷଣରେ ଯାଉଥିଲା । ଯେହେତୁ ସେ ଜଙ୍ଗଲର ରାଜା, ଜଙ୍ଗଲର ଏପରି ପରିସ୍ଥିତିରେ ସେ ପୂରାପୂରି ବିଚଳିତ ହୋଇଉଠିଲା । ବାଘ ବିଲୁଆକୁ ପଚାରିଲା, "କ'ଣ ହେଇଛି ? ସମସ୍ତେ ଜଙ୍ଗଲ ଛାଡ଼ି ଯାଉଛନ୍ତି ?"

ବାଘର ପ୍ରଶ୍ନର ଉତ୍ତର ଦେବାକୁଯାଇ ବିଲୁଆ କହିଲା, "କ'ଣ କହିବି ଆଉ ବାଘମାମୁ! ଆମେ ଯଦି ଜଙ୍ଗଲ ଛାଡ଼ି ନ ଯିବା, ପୋଡ଼ି ହୋଇ ମରିବା ।" ବାଘ ପୁଣି ପଚାରିଲା, "କିନ୍ତୁ କାହିଁକି ?" ବିଲୁଆ କହିଲା, "ବଡ଼ ବଡ଼ ସରକାରୀ ବାବୁମାନେ ଏଇ ଜଙ୍ଗଲ ଉପରେ ଆଖି ପକେଇଛନ୍ତି । ଜଙ୍ଗଲ ପୋଡ଼ା ହେଲା ପରେ ଏଠାରେ ଗୋଟେ ବଜାର ତିଆରି ହେବ, ଯେଉଁଠାରେ ଭଲି କି ଭଲି ଜିନିଷପତ୍ର ବିକ୍ରି ହେବ । ଆଉ ବଡ଼ ବଡ଼ ବାବୁ, ବାବୁଆଣୀମାନେ ଏଠାକୁ ଆସି ନିଜ ନିଜର ମନପସନ୍ଦର ଜିନିଷପତ୍ର କିଣିବେ ।"

ବିଲୁଆଠାରୁ ଏ ସବୁ ଶୁଣି ବାଘର ଆଖିରେ ଲୁହ ଜକେଇ ଆସିଲା ଆଉ ସେ ସ୍ଥିର କଲା ସରକାରୀବାବୁମାନଙ୍କୁ ଏ ଜଙ୍ଗଲ ମାଡ଼ିବାକୁ ଦେବନାହିଁ; ତଥାପି ବାଘର ମନରେ ସନ୍ଦେହ ଜାତ ହେଲା । ଭାବିଲା ବିଲୁଆ ତ ବହୁତ ଚତୁର, ସେ ନିଜର ମନ୍ଦ ଉଦ୍ଦେଶ୍ୟକୁ ଚରିତାର୍ଥ କରିବା ପାଇଁ ମୋ ଆଗରେ ନାଟକ କରୁନାହିଁ ତ ! ପୁଣି ବାଘ ବିଲୁଆକୁ ପଚାରିଲା, "ହେଲେ ତତେ ଏ ଖବର କିଏ ଦେଲା ?" ବିଲୁଆ କହିଲା, "ଶୁଆ ଜଙ୍ଗଲ ବାହାର ସହରକୁ ବୁଲିବାକୁ ଯାଇଥିଲା । ସେଇ ଏ ଖବର ଜଙ୍ଗଲସାରା ହାଲା କରିଦେଇଛି ।" ବାଘ ବିଲୁଆକୁ କହିଲା, "ଶୁଆ ଆଉ ଚୁଗୁଲାମି କରୁନାହିଁ ତ ?" ବିଲୁଆ କହିଲା, "ନାଁ, ତା'ର ଜୀବନରେ କେବେ ବି ମିଛ କହିନି । ସେ ସବୁ ସତ କଥା କହୁଛି ।"

ବିଚରା ଗୁଣ୍ଡୁଚିମୂଷା ପାଇଁ ଗଛ କୋଟର ସାତ ସ୍ୱପ୍ନ ହୋଇଯିବ । ଏ କଥା ଶୁଣି ଗୁଣ୍ଡୁଚିମୂଷା ମନଦୁଃଖରେ କାନ୍ଦିବାକୁ ଲାଗିଲା । ତଥାପି ମନରେ ସାହସ ବାନ୍ଧି ସେ ସେ ତା'ର ସାଥୀ ଗୁଣ୍ଡୁଚିମୂଷାମାନଙ୍କ ସହିତ ଜଙ୍ଗଲ ଛାଡ଼ିଲା । ଏତେମାତ୍ରାରେ ପଶୁଜନ୍ତୁ

ଏକାଠି ଯାଉଥିବାରୁ ସେମାନଙ୍କ ଭିତରେ ଠେଲାପେଲା ହୋଇ ଅନେକ ମୃତାହତ ମଧ୍ୟ ହେଲେ । ସ୍ଥିର ହେଲା ଯେ ବଡ଼ ପଶୁମାନେ ସବା ପଛରେ ଧାଡ଼ି ବାନ୍ଧି ଯିବେ । ସେଇଆ ହେଲା । ସବାପଛରେ ବଡ଼ ବଡ଼ ପଶୁ– ବାଘ, ଭାଲୁ, ହାତୀ ଇତ୍ୟାଦି ଧାଡ଼ି ବାନ୍ଧି ଚାଲିଲେ । ଚାହୁଁ ଚାହୁଁ ପୂରା ଜଙ୍ଗଲଟା ଖାଲି ହୋଇଗଲା । ବାଘ ମନେ ମନେ ସ୍ଥିର କରିଥାଏ, ସହରୀବାବୁମାନଙ୍କୁ ଜଙ୍ଗଲ ମାଡ଼ିବାକୁ ଦେବନାହିଁ ।

ଶେଷରେ ସହରୀବାବୁମାନେ ଜଙ୍ଗଲରେ ନିଆଁ ଲଗାଇବାକୁ ଆସିଲେ । ବାଘ ସେମାନଙ୍କୁ ବହୁତ ଅଟକେଇବାକୁ ଚେଷ୍ଟାକଲା; ହେଲେ ପାରିଲାନି । ବଡ଼ ବଡ଼ ବାବୁମାନଙ୍କ ବଡ଼ ବଡ଼ ଚିନ୍ତାଧାରା ଓ ବଡ଼ ବଡ଼ ଚାଲ୍‌କୁ ବୁଝିବାର କ୍ଷମତା ସାମାନ୍ୟ ପଶୁଟା ପାଖରେ ଆସିବ କେମତି ? ସେମାନେ ନିଶା ଇଂଜେକ୍‌ସନ୍ ଫୋପାଡ଼ି ବାଘକୁ ଆୟତ୍ତ କରିନେଲେ । ସମସ୍ତଙ୍କୁ ବଡ଼ ବଡ଼ ଜନ୍ତାରେ ପୂରାଇ ଚିଡ଼ିଆଖାନାକୁ ପଠାଇଦିଆଗଲା ।

ଛୋଟ ଛୋଟ ପଶୁ ଯଥା– ଠେକୁଆ, ବିଲୁଆ, କୁକୁର, ବିଲେଇ ତ୍ରାହି ପାଇଗଲେ; ହେଲେ ସେମାନେ ଦାସତ୍ୱରୁ ମୁକ୍ତି ପାଇଲେନି । ମନୁଷ୍ୟମାନଙ୍କ ଦ୍ୱାରା କେତେକ ପଶୁ ଗୃହପାଳିତ ହୋଇ ଦିନ କଟାଇଲେ ତ ଆଉ କେତେକ ସହରର ଗଳିକନ୍ଦିରେ ବୁଲିବାକୁ ଲାଗିଲେ । କହିବାକୁ ଗଲେ, ପଶୁପକ୍ଷୀମାନେ ମଣିଷମାନଙ୍କର ଏକରକମର ଗୋଲାମ୍ ପାଲଟିଗଲେ । ଆଉ କେତେକ ପଶୁପକ୍ଷୀ ମଣିଷମାନଙ୍କ ଜିହ୍ୱାର ସ୍ୱାଦ ମେଣ୍ଟାଇବା ପାଇଁ ବଳି ପଡ଼ିଗଲେ । ନିରୀହ ପଶୁପକ୍ଷୀମାନେ ମଣିଷମାନଙ୍କ ଆଙ୍ଗୁଠି ଇସାରାରେ ନାଚିବାକୁ ବାଧ୍ୟହେଲେ ।

ସବୁଦିନ ପାଇଁ ସେମାନେ ମଣିଷମାନଙ୍କ ମାୟାଜାଲରେ ଛନ୍ଦି ହୋଇ ପଡ଼ିଲେ । କେଜାଣି କେବେ ସେମାନେ ଏଇ ଦାସତ୍ୱ ବନ୍ଧନରୁ ମୁକ୍ତି ପାଇବେ, ସେଇଟା ସମୟ କହିବ ।

ଖପୁରିଆ, ନେତାଜୀନଗର, ମଧୁପାଟଣା, କଟକ-୧୦

---

## ମହତ ଜନ

ଶ୍ରୀ ତପନ କୁମାର ସ୍ୱାଇଁ

ଆମ ସାହିର ନାଳି, ନର୍ଦ୍ଦମା ସଡ଼କ, ପାଇଖାନା
ଅସନା ଯିଏ କରୁଛି ନିତି ପକାଇ ଆବର୍ଜନା ।

ଅସନା ଚିଜ ଲାଗଇ ଘୃଣା ନାକରେ ଦେଉ କନା
ଅସନା ଚିଜ ଫିଙ୍ଗିବା ପାଇଁ କେହି କରୁନା ମନା ।

ପରିବେଶକୁ ସକାଳୁ ଉଠି ସଫାକରେ ଯେ ନିତି
ପଶୁ,ପକ୍ଷୀ ବା ମଣିଷ ହେଉ ସେ ପରା ଉଚ୍ଚ ଜାତି ।

ପିନ୍ଧିଲେ ଖାଲି ବେଶପୋଷାକ ସଫା ରହିଲେ ନିଜେ
ମହତ ଜନ ତାଲିକାରେ ବା କିଏ ସେ ତାକୁ ଖୋଜେ ।

ନିଜେ ନିରୋଗ ରହିବା ପାଇଁ କରେନି ଯିଏ ଚିନ୍ତା,
ଆମରି ପାଇଁ ସାରା ଜୀବନ ଯିଏ ସହୁଛି ବ୍ୟଥା ।

ଥରୁଟେ ହେଲେ ତା'ପାଇଁ କେ ଆହା ପଦୁଟେ କୁହ,
ନ ଦେଲ ନାହିଁ ଧନସମ୍ପତ୍ତି ନ ପୋଛ ଆଖି ଲୁହ ।

ଜଳ ଯୋଗାଣ ଶାଖା, ରାଣୀହାଟ, କଟକ

## ଛାଇ ଓ ଛବି

# ନାମରେ ନୁହେଁ, କଳାରେ ବି ରୂପରେ ବି ମାଧୁରୀ

ଶ୍ରୀ ଡିଲେନ୍ଦ୍ର ବୋଡ଼ା

କଳାର କ'ଣ ସୀମା ଅଛି ? କଳାକୁ ଏକ ନିର୍ଦ୍ଦିଷ୍ଟ ସଂଜ୍ଞାରେ ବାନ୍ଧି ନିରୂପିତ କରାଯାଇପାରେ କି? ୬୪ ପ୍ରକାର କଳା ଅଛି । ତା'ର ପୁଣି କେତେ ଧାରା ଉପଧାରା (ଶିରା-ପ୍ରଶିରା ପରି) ।

ନୀଳ ଆକାଶ । ସନ୍ଧ୍ୟା ହେବାକୁ ଅଳ୍ପ ବାକି ଅଛି । ଚଢ଼େଇଟିଏ ଉଡ଼ିଯାଉଛି । ତା'ମନ କ'ଣ ହେଲା କେଜାଣି, ଛବିଳତା କରି ବାମରୁ ଡାହାଣ, ତା'ପରେ ପୁଣି ଉର୍ଦ୍ଧ୍ୱକୁ ଉଡ଼ିଲା । ଅନେକ ଦେଖନ୍ତି ଏପରି ଅନେକ ଦୃଶ୍ୟ । ମାତ୍ର କବି ହୁଏ ଏ ଦୃଶ୍ୟ ଦେଖି ଆତ୍ମବିଭୋର ଏବଂ ଲେଖିପକାଏ "ମା ନିଷାଦ ପ୍ରତିଷ୍ଠା ତ୍ୱମାଗମ" ପରି ୨/୪ ପଦ ।

କୋମଳ ବୟସର କିଶୋରୀ ମନରେ ଆସେ ତାହା ଦେଖି ଆଉ ଏକପ୍ରକାର ଭାବନା । ଏହି ହେଉଛି କଳା । ଦୃଶ୍ୟ ଏକ; ମାତ୍ର ଦର୍ଶକ ଭିନ୍ନ ଭିନ୍ନ ମାନସିକ ସ୍ତରର । ତେଣୁ ସେହି ଏକ ଦୃଶ୍ୟ ଦେଖି କବି ଲେଖେ କବିତା । ସେହି ଦୃଶ୍ୟର ସାଦୃଶ୍ୟ ଥିବା ଓ ତା'ମନର ଭାବଭୂମିର ଅବସ୍ଥା ଅନୁସାରେ ଗାୟକ ଗୁଣୁଗୁଣେଇ ହୁଅନ୍ତି ଗୀତଟିଏ ।

କଳା ଶବ୍ଦରେ ଅଛି କଳ ଶବ୍ଦ । ପକ୍ଷୀ (ବିଶେଷ କରି ହଂସ)ର ଧ୍ୱନିକୁ କଳରବ, କଳକଣ୍ଠୀ କୁହାଯାଏ । ନଦୀ-ଝରଣା ବହିଯିବାବଳେ ଯେଉଁ ଧ୍ୱନି, ତାକୁ କୁହାଯାଏ କଳକଳ ଧ୍ୱନି । ଏହି କଳକଳ ଧ୍ୱନି ଶୁଣିବା ମଧୁରତାକୁ ସୂଚାଏ । ଚିତ୍ରରେ ହେଉ କି ଧ୍ୱନିରେ, କଥାରେ ହେଉ ବା ଗୀତରେ, ଚାହାଣି ଖେଳାଇ ହେଉ ବା ଓଠ ଭଙ୍ଗିମା କରି ହେଉ, ଯେତେବେଳେ ମଣିଷ ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟକୁ ବିଚିତ୍ର ଢଙ୍ଗରେ ପ୍ରକାଶ କରେ, ତାହା କଳା । ତେବେ ସାଧାରଣତଃ ଭଲ କରି ଗାଇବା, ଭଲ କରି ନାଚିବା, ଚିତ୍ର ଆଙ୍କିବା, ଠିକ୍ ଲୟ ତାଳରେ ବାଜା ବଜାଇବା ଇତ୍ୟାଦିକୁ ଉତ୍ତମମାନର କଳା ଓ ତାକୁ ଶ୍ରେଷ୍ଠ କଳାକାର କୁହାଯାଏ ।

କଳା ଚିର ଜୀବନ୍ତ ଓ ଚିର ପ୍ରେରଣାଦାୟୀ ହୋଇଥାଏ । କେଉଁ ରାଗର ଗୀତ କେଉଁ ତାଳରେ ଆବଦ୍ଧ ହେବ, ସେହି ଗୀତ ଓ ତାର ଅର୍ଥ ଅନୁସାରେ ନର୍ତ୍ତକ ବା ନର୍ତ୍ତକୀ କି ଭାବେ ନାଚିବେ ତାହା ଉକ୍ତ ଗୀତ, ଗାୟନ ସଙ୍ଗୀତ ଓ ବାଦ୍ୟରେ ଯୁକ୍ତ ହୋଇଥାଏ ।

ଅପ୍ସରା (ନର୍ତ୍ତକୀ)ମାନଙ୍କ ମଧ୍ୟରେ ଶ୍ରେଷ୍ଠ କଳାକୁ (ଜୀବନ ଓ ଜଗତର ଗୀତ)କୁ ବୁଝିବାରେ ଅନ୍ୟ ନୃତ୍ୟାଙ୍ଗନାମାନଙ୍କ ଅପେକ୍ଷା ଉର୍ବଶୀ ପ୍ରଧାନ । ତେଣୁ ସେ ନର୍ତ୍ତକୀଶ୍ରେଷ୍ଠ । ଭଗବାନ ନାରାୟଣଙ୍କ ଉରୁରୁ ସୃଷ୍ଟି ହୋଇଥିଲେ ସେ । ଏହି ଭାବେ ଦେଖିବାକୁ ଗଲେ ହିନ୍ଦୀ ଚଳଚ୍ଚିତ୍ରର ଅଭିନେତ୍ରୀମାନଙ୍କ ମଧ୍ୟରେ ମାଧୁରୀ ଦୀକ୍ଷିତ ଏକ ବିଚକ୍ଷଣ ତଥା ପ୍ରବୀଣା ନର୍ତ୍ତକୀ ।

ମାଧୁରୀ ଦିକ୍ଷିତଙ୍କ ଅଭିନୟ ଜଗତରେ ଆବିର୍ଭାବ ସମୟଟା ବର୍ତ୍ତମାନ ଚାଲୁଥିବା ନୃତ୍ୟ ଓ ପୁରାତନ ନୃତ୍ୟର ମଧ୍ୟବର୍ତ୍ତୀ ଅବସ୍ଥାରେ ହୋଇଥିଲା । ବର୍ତ୍ତମାନ ଅଭିନେତା-ଅଭିନେତ୍ରୀମାନେ କରୁଥିବା ନୃତ୍ୟର ଆରମ୍ଭ ହୋଇଛି ୧୫ ବର୍ଷ ତଳୁ ଏବଂ ତା' ପୂର୍ବ ୧୦ ବର୍ଷ ଅର୍ଥାତ୍ ୨୦୦୩/୨୦୦୪ ମସିହା ଏବଂ ୧୯୯୦ ମସିହା ମଧ୍ୟରେ । ଏ ସମୟରେ ଅଭିନେତା-ଅଭିନେତ୍ରୀମାନଙ୍କ ନୃତ୍ୟରେ ପୁରାତନ ଓ ଆଧୁନିକ ଉଭୟ ଶୈଳୀର ନୃତ୍ୟ ସମ୍ମିଳିତ ହୋଇଥିଲା । ପ୍ରାୟ ଅଭିନେତା-ଅଭିନେତ୍ରୀମାନେ ସମୟ ତାଳରେ ପଡ଼ି ସେ ପ୍ରକାର ନୃତ୍ୟ କରିଥିଲେ ହେଁ ମାଧୁରୀ ଦୀକ୍ଷିତଙ୍କ ନୃତ୍ୟ ସବୁଠୁ ଆକର୍ଷଣୀୟ । କାରଣ ତାଙ୍କ ନୃତ୍ୟରେ ଏକପ୍ରକାର ଅଙ୍ଗଭଙ୍ଗୀ ଖୁବ୍ ସୁନ୍ଦର ।



ଏକ ମରହଟ୍ଟା ଚଳଚ୍ଚିତ୍ରରେ ମାଧୁରୀ



ତାଙ୍କର ଅନୁଭବ (ଗୀତର ଅର୍ଥ ତଥା ଗୀତ ମଧ୍ୟରେ ଥିବା ଭାବକୁ ବୁଝିବା) ବେଶୀ । ତେଣୁ ଗୀତ ଅନୁଯାୟୀ ତାଳ, ଅଙ୍ଗଭଙ୍ଗୀ ଓ ମୁହଁରେ, ଆଖିରେ ଓ ତଥା ଅଙ୍ଗ-ପ୍ରତ୍ୟଙ୍ଗରେ ଭାବଟା ନିଖୁଣ ଭାବରେ ସେ ପ୍ରକାଶ କରି ପାରିଛନ୍ତି ।

କେବଳ ତାଳ ଅନୁସାରେ ନାଚିଦେଲେ ଯେ ତାହା ଏକ ସୁନ୍ଦର ନାଚ– ସେପରି କଥା ନୁହେଁ । ଗୀତର ଅର୍ଥ ଓ ଭାବର ଝଙ୍କାରକୁ ନିଜ ନୃତ୍ୟରେ ନର୍ତ୍ତକ ବା ନର୍ତ୍ତକୀ କେତେଦୂର ଫୁଟାଇ ପାରିଛି (ଭାବ ଅନୁଯାୟୀ ମୁହଁ ଆଖି ତଥା ଶରୀରର ଅଙ୍ଗ ପ୍ରତ୍ୟଙ୍ଗମାନଙ୍କରେ କିପରି ଭାବ ଅନୁଯାୟୀ ଭଙ୍ଗୀ କରିଛି, କିପରି ନଚାଇଛି, ହସାଇଛି ବା ଭାବ ଫୁଟାଇଛି)– ତାହା ହେଲା ନୃତ୍ୟର ମାନ । ଏ ଦିଗରେ ମାଧୁରୀ ଦୀକ୍ଷିତ୍ ଖୁବ୍ ଦକ୍ଷ ।

ମଣିଷ ତ କଳାପ୍ରିୟ । ମାଧୁରୀ ଦୀକ୍ଷିତଙ୍କ ପରି କଳାକାର (ନୃତ୍ୟାଙ୍ଗନା) ହିନ୍ଦୀ ଚଳଚ୍ଚିତ୍ର ଜଗତରେ କମ୍ ନ ହେଉ । ସେ ଧରଣର ନୂତନ ନୂତନ ପ୍ରତିଭାସମ୍ପନ୍ନ କଳାକାର ସ୍ଥାନିତ ହୁଅନ୍ତୁ ଓ କଳା ପୂଜାରୀ ତଥା କଳାପ୍ରେମୀମାନଙ୍କୁ ବାସ୍ତବ କଳା ଦେଖାଇ ତାଙ୍କର ମନୋରଂଜନ କରିବା ସହ କଳାର ମହିମାକୁ ଉଜ୍ଜୀବିତ କରୁଥାନ୍ତୁ– ଏତିକି ପ୍ରାର୍ଥନା ସର୍ବକଳାର କଳାକାର ଭଗବାନଙ୍କ ନିକଟରେ ।

ପତ୍ରାପାଲି, ଗୋପାଳପୁର, ସୁନ୍ଦରଗଡ଼- ୨୪



# ପୁସ୍ତକ ପରିଚୟ

**ବୋଲେ ହୁଁ ଟି-- ମୁଖ୍ୟ ସମ୍ପାଦନା-ଶ୍ରୀ ନନ୍ଦକିଶୋର ସିଂହ**, କୋରେଇ, ଯାଜପୁର- ୭୫୫୦୨୨, ମୋ- ୯୮୬୧୪୩୫୨୯୯

ଡିମେଇ ୧/୮ ଆକାରର ବୟସ୍କ ଦିବସର ଏହି ସ୍ୱତନ୍ତ୍ର ସଂଖ୍ୟାଟି ଆମର ହସ୍ତଗତ ହୋଇଛି । ଏଥିରେ ଅନେକ ଉପାଦେୟ ସମାଲୋଚନା ତଥା ଜ୍ଞାନଗର୍ଭକ ବିଷୟର ଅବତାରଣା କରାଯାଇଛି । ସୁନ୍ଦର ତଥା ସାବଲୀଳ କବିତାର ସମାହାରରେ ଏହି ରଂଗିନ୍ ପ୍ରଚ୍ଛଦଟି ସହିତ ଲକ୍ଷ୍ମୀପୂଜାର ଚିତ୍ର ଆକର୍ଷଣୀୟ ହୋଇପାରିଛି ଏହି ବିଶେଷ ସଂଖ୍ୟାରେ । ଏହି ପତ୍ରିକାଟିର ପ୍ରଚାର ଓ ପ୍ରସାର କାମନା କରେ ।

**ବାଇ ମହାନ୍ତି ଉବାଚ-- ଲେଖକ- ଡ. ମନୀନ୍ଦ୍ର ମହାନ୍ତି**, ନୂଆବଜାର, ଭଦ୍ରକ-୭୫୬୧୦୦, ଫୋ- ୯୨୩୮୫୦-୬୨୬୨, ମୂଲ୍ୟ- ୮୦ ଟଂକା ମାତ୍ର ।

ଆଜ୍ଞା ଟିକେ ଅପେକ୍ଷା କରିବେ କି?, କଅଣ ସବୁ ଭଲ ତ?, ଛକ ସଭ୍ୟତା ଇତ୍ୟାଦିକୁ ନେଇ ଏହି ଡିମେଇ ୧/୮ ଆକାରର ପୁସ୍ତକଟିରେ ସପ୍ତମ ଅଧ୍ୟାୟ ପର୍ଯ୍ୟନ୍ତ ସନ୍ନିବେଶିତ ହୋଇଛି ।

ପ୍ରତ୍ୟେକ ସମାଲୋଚନାମୂଳକ ପ୍ରବନ୍ଧ ଆମର ସାମାଜିକ ସମସ୍ୟାଆଧାରିତ । ସମସ୍ତ ବିଷୟ ବ୍ୟଙ୍ଗକଥା ଆଧାରରେ ଲିଖିତ, ଯାହାକୁ ପଢ଼ିଲେ ପାଠକ ସଚେତନ ହେବା ସହିତ ଏ ବିଷୟରେ ଅନେକ ତଥ୍ୟ ଉପଲବ୍ଧ କରିପାରିବେ ।

**ସାଧବ ବୋହୂ-- ସମ୍ପାଦନା- ଶ୍ରୀ ସୁଶାନ୍ତ କୁମାର ନନ୍ଦ**, ୩୮୫,ଟାଇପ୍-୩, ବ୍ଲକ୍- ୧୮, ନିୟୁ ଏ.ଜି କଲୋନୀ, ଜୟଦେବ ବିହାର, ଭୁବନେଶ୍ୱର- ୧୨, ଦୂରଭାଷ- ୯୪୩୯୮୭୯୩୮୫, ପ୍ରତିଖଣ୍ଡର ମୂଲ୍ୟ- ୨୦ ଟଂକା ।

ଏହି କ୍ରାଉନ୍ ଆକାରର ତ୍ରୈମାସିକ ପତ୍ରିକାଟିରେ ବିଶିଷ୍ଟ ଶିଶୁ ସାହିତ୍ୟିକମାନଙ୍କର ପୁରାଣ କାହାଣୀ, କବିତା, ଗଳ୍ପ, ଜୀବନୀ, କଥାରେ କଥାରେ ଗପ ଇତ୍ୟାଦି ପ୍ରକାଶିତ ହୋଇଛି । ପିଲାଙ୍କ ପାଇଁ ଆକର୍ଷଣୀୟ ବିଭାଗ ରହିଛି ଏବଂ ଏଥି ସହିତ ଚିତ୍ର ମଧ୍ୟ ସ୍ଥାନିତ ହୋଇଛି । ରଂଗିନ୍ ପ୍ରଚ୍ଛଦରେ ଦୁଇଟି ଶିଶୁଙ୍କର ଖେଳିବାର ଚିତ୍ର ଏହାକୁ ଶିଶୁ ମନଲାଖି କରିପାରିଛି । ପତ୍ରିକାଟିର ପ୍ରଚାର, ପ୍ରସାର କାମନା କରୁଛୁ ।

**ନବକାକଳି-- ସମ୍ପାଦକ- ଡ. ସୁରେନ୍ଦ୍ରନାଥ ତ୍ରିପାଠୀ**, ଜବାହାର ନବୋଦୟ ବିଦ୍ୟାଳୟ, ସୁନାମୁଣ୍ଡା, ସୁଗୁଡ଼ା, ଜିଲ୍ଲା-ଦେବଗଡ-୮, ଦୂରଭାଷ- ୯୪୩୭୪୭୫୩୫୮, ପ୍ରତିସଂଖ୍ୟାର ମୂଲ୍ୟ- ୨୦ ଟଂକା ।

କ୍ରାଉନ୍ ଆକାରର ଏହି ପତ୍ରିକାଟିର ମକର ସଂଖ୍ୟା ଆମର ହସ୍ତଗତ ହୋଇଛି । ବିଶିଷ୍ଟ ଶିଶୁ ସାହିତ୍ୟିକମାନଙ୍କର ପ୍ରବନ୍ଧ, କବିତା, ଶିଶୁଗଳ୍ପ ରହିଛି । ଶେଷରେ ରାଜ୍ୟସ୍ତରୀୟ ଖବର ସ୍ଥାନିତ ହୋଇଛି । ରଂଗିନ୍ ପ୍ରଚ୍ଛଦରେ 'ନବକାକଳି'ର ବାର୍ଷିକ ଉତ୍ସବର ଫଟୋଚିତ୍ର ଆକର୍ଷଣୀୟ ହୋଇଛି । ପତ୍ରିକାଟି ଆଦୃତ ହେଲେ ସମ୍ପାଦକଙ୍କର ଶ୍ରମ ସାର୍ଥକ ହେବ ।

---

( ୫୪ ପୃଷ୍ଠାର ଅବଶିଷ୍ଟାଂଶ )

୧୪ । ୨- ଦେଶର ଦ୍ୱିତୀୟ ବୃହତ୍ ପଞ୍ଜାବ ନ୍ୟାସନାଲ୍ ବ୍ୟାଙ୍କ୍‌ରେ ୧୧,୫୦୦ କୋଟି ଠକେଇରେ ଜଣାଶୁଣା ହୀରା ବ୍ୟବସାୟୀ ନୀରବ ମୋଦି ସଂପୃକ୍ତ । ବ୍ୟାଙ୍କ୍ ପକ୍ଷରୁ କେତେକ କର୍ମଚାରୀ ନିଲମ୍ବିତ ।

**ବିଦେଶ ଖବର**

୨୭ । ୧- ଆଫଗାନିସ୍ଥାନର ରାଜଧାନୀ କାବୁଲ୍‌ରେ ବୋମା ବିସ୍ଫୋରଣରେ ୯୫ଜଣ ମୃତ ଓ ୧୫୮ଜଣ ଆହତ ।

୮ । ୨- ଏକ ଦୁର୍ନୀତି ମାମଲାରେ ବାଂଲାଦେଶର ପୂର୍ବତନ ପ୍ରଧାନମନ୍ତ୍ରୀ ଖାଲେଦା ଜିଆଙ୍କୁ ୫ ବର୍ଷ ଜେଲ୍ ।

୯ । ୨-ପେପ୍‌ସିକୋର ଅଧକ୍ଷା ଇନ୍ଦ୍ରା ନୁୟି ଆଇସିସିର ପ୍ରଥମ ମହିଳା ନିର୍ଦ୍ଦେଶକ ଭାବେ ନିଯୁକ୍ତ ।

୧୫ । ୨- ନେପାଳର ପ୍ରଧାନମନ୍ତ୍ରୀ ଭାବେ ପି.କେ.ଓଲିଙ୍କର ଦ୍ୱିତୀୟଥର ପାଇଁ ଦାୟିତ୍ୱ ଗ୍ରହଣ ।

- ଦକ୍ଷିଣ ଆଫ୍ରିକା ରାଷ୍ଟ୍ରପତି ପଦରୁ ଜ୍ୟାକୋବ ଜୁମାଙ୍କର ଇସ୍ତଫା ପ୍ରଦାନ । ଉପରାଷ୍ଟ୍ରପତି ସିରିଲ୍ ରାମାଫୋସା ପରବର୍ତ୍ତୀ ରାଷ୍ଟ୍ରପତି ହେବେ ।

## ଶବ୍ଦଧନ୍ଦା ମାର୍ଚ୍ଚ-୨୦୧୮

ଡକ୍ଟର ନିରଞ୍ଜନ ସାହୁ

୧ । କାଗଜରେ ବା କାର୍ଡ଼ରେ ଘର କାଟି ଉତ୍ତର ଲେଖନ୍ତୁ ।
୨ । ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।
୩ । ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।
୪ । ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।
୫ । ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।
୬ । ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨ ।୦୩ ।୨୦୧୮
୭ । ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| | | | | | | |
|---|---|---|---|---|---|---|
| ୧ | | ୨ | ୩ | ୪ | ୫ | ୬ |
| | ✱ | | | ୭ | | |
| ୮ | | | ୯ | | | ✱ |
| | ୧୦ | ✱ | | ✱ | ✱ | ୧୧ |
| ୧୨ | | | ୧୩ | ୧୪ | ୧୫ | |
| ୧୬ | | ✱ | ୧୭ | | | ୧୮ |
| | ୧୯ | | | ✱ | ✱ | |

### ସୂଚନା

**ବାମରୁ ଡାହାଣ--** ୧ । ଧର୍ମକାର୍ଯ୍ୟରେ ଗୃହପାଳିତ ପଶୁ ଅର୍ପଣ (୩), ୪ । ବସିବାର ସ୍ଥାନ (୩), ୭ । ବିଷ (୩), ୮ ।ଅହଙ୍କାର (୩), ୯ । ପୃଥିବୀ (୩), ୧୨ । ଏକ ଖରାଦିନିଆ ଫଳ (୪), ୧୪ । ଛାଡ଼/ ନିଷ୍କୃତି (୩), ୧୬ । କାଳି ଦୁଆତ (୨), ୧୭ । ପ୍ରଣାମ (୪), ୧୯ । ଅସ୍ଥାବର (୩) ।

**ଉପରୁ ତଳ--** ୧ ।ଏକ ପବିତ୍ର ନଦୀବିଶେଷ (୪), ୨ । ମୃଦୁ (୩), ୩ ।ମହାଦେବ (୪), ୫ । ଧାଡ଼ି/ ଶ୍ରେଣୀ (୩), ୬ । ଯଷ୍ଟିବିଶେଷ (୨), ୧୦ । ପଦ୍ମ (୪), ୧୧ । ନିୟମ (୨), ୧୨ । ଅନ୍ଧକାର (୩), ୧୩ । ଭୂମିଷ୍ଠ ହେବାର ପଦ୍ୟରୂପ (୩), ୧୫ । ଦକ୍ଷିଣ ଓଡ଼ିଶାର ଏକ ସହର (୨), ୧୮ । ରଥ (୨) ।

*--ସାହୁପଡ଼ା, ବରୀ, ଯାଜପୁର- ୭୫୫୦୦୩*

---

**ଫେବୃଆରୀ ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)–** ୧ । ଘନକଫ, ୪ । ନିଖିଳ, ୫ । ନହବତ, ୭ । କାଲା, ୯ । ତମାସା, ୧୧ । ନଳିନେଶୟ, ୧୨ । ଘଡ଼ଘଡ଼ି, ୧୩ । ଗଜାନନ ।

**ଉପରୁ ତଳ–** ୧ । ଘନକାଳ, ୨ । ନହଲା, ୩ । କବଳିତ, ୪ । ନିଚୂଳ, ୬ । ନାଗଭୂଷଣ, ୮ । ଚତୁରାନନ, ୧୦ । ସାୟକ, ୧୨ । ଘର ।

---

**ଗତମାସର ଠିକ୍ ଉତ୍ତରଦାତା– ନିଶିକାନ୍ତ ବେହେରା,** ବେଡ଼ାପଡ଼ା, ହିନ୍ଦୋଳ ରୋଡ୍, ଢେଙ୍କାନାଳ; **ରାଜକିଶୋର ସାହୁ,** ଓଡ଼ଗାଁ, ନୟାଗଡ଼; **ପ୍ରଭାତ କୁଅଁର,** ସୁଗୋ, ଜଳେଶ୍ୱର; **ରସାନନ୍ଦ ଘଡ଼େଇ,** କୁଆଁଣିଆ, ନୟାଗଡ଼ ।

ବିଳମ୍ବରେ ଆସିଥିବା ଜାନୁଆରୀ ମାସର ଉତ୍ତର ଦାତା- **ରସାନନ୍ଦ ଘଡ଼େଇ, ହେଜାବ୍ ନାହିଦ୍ ଓ ପ୍ରିୟଙ୍କା ଟୁଡୁ, ରାଜକିଶୋର ସାହୁ ।**

# ପୃଥ୍ୱୀ କ୍ଷଣକ୍ଷଣକେ ଆନ

## ଓଡ଼ିଶା ଖବର

୨୪ । ୧- କେନ୍ଦ୍ରାପଡ଼ା ସାଂସଦ ବୈଜୟନ୍ତ ପଣ୍ଡା ବିଜୁ ଜନତା ଦଳର ପ୍ରାଥମିକ ସଦସ୍ୟ ପଦରୁ ନିଲମ୍ବିତ ।

୨୫ । ୧- ୬୯ତମ ସାଧାରଣତନ୍ତ୍ର ଦିବସରେ ଓଡ଼ିଶାରୁ ୫ଜଣ ସ୍ୱାଧୀନତା ସଂଗ୍ରାମୀ– ଭବାନୀ ଚରଣ ପଟ୍ଟନାୟକ, ସାହିତ୍ୟିକ ଚନ୍ଦ୍ରଶେଖର ରଥ, ସ୍ଥାପତ୍ୟ ପାଇଁ ଶିଳ୍ପୀ ପ୍ରଭାକର ମହାରଣା, କଳା ଓ ହସ୍ତତନ୍ତ କ୍ଷେତ୍ରରେ ଗୋବର୍ଦ୍ଧନ ପାଣି ମନୋନୀତ ଏବଂ ୪୪ଜଣ ଆରକ୍ଷୀ ବାହିନୀଙ୍କୁ ରାଷ୍ଟ୍ରପତି ଓ ରାଜ୍ୟପାଳ ପଦକ ପ୍ରଦାନ କରାଯିବ ।

୨୬।୧। - ଅଷ୍ଟାଦଶ 'ଗ୍ଲୋବାଲ୍ ଥିଏଟର ଫେଷ୍ଟିଭାଲ୍' କଟକ କଳାବିକାଶ କେନ୍ଦ୍ରଠାରେ ଉଦ୍‌ଘାଟିତ ।

୨୮ । ୧- ବାଙ୍ଗାଲୋରରେ ଖେଳାଯାଉଥିବା ଆନ୍ତଃରାଜ୍ୟ ସିନିୟର ମହିଳା ଟ୍ୱେଣ୍ଟି୨୦ରେ ଓଡ଼ିଶାର ଚମ୍ପିଆନ୍ ଆଖ୍ୟା ଅର୍ଜନ ।

୪ । ୨- ବାଦାମବାଡ଼ି କଟକର ମୁଖ୍ୟ ରାସ୍ତାରେ ଏକ ମଲ୍‌ରେ ଅଗ୍ନିକାଣ୍ଡ ଘଟି କୋଟିଏରୁ ଊର୍ଦ୍ଧ୍ୱ ସମ୍ପତ୍ତି ଦଗ୍ଧ ।

୫ । ୨- ୟୁରେସିଆନ୍‌ର ପୂର୍ବତନ ପ୍ରତିଷ୍ଠାତା ନିର୍ଦ୍ଦେଶକ ତଥା ବରିଷ୍ଠ କୂଟନୀତିଜ୍ଞ ପ୍ରଫେସର ଅରୁଣ କୁମାର ମହାନ୍ତିଙ୍କର ୬୪ ବର୍ଷରେ ପରଲୋକ ।

୬ । ୨- ଚଳିତ ବଜେଟ୍‌ରେ ଓଡ଼ିଶା ରେଳବାଇକୁ ୫୨୫୨ କୋଟିର ଅନୁଦାନ ଘୋଷଣା ।

୭ । ୨- ପୂର୍ବତନ ସାଂସଦ, ପ୍ରଥମ ଆଦିବାସୀ ମହିଳା ଗ୍ରାଜୁଏଟ୍ ମନ୍ତ୍ରୀ ଫ୍ରିଡ଼ା ଟପ୍ପୋଙ୍କର ୯୩ ବର୍ଷରେ ପରଲୋକ ।

୯ । ୨- ପ୍ରଖ୍ୟାତ ସାହିତ୍ୟିକ, ଶିକ୍ଷାବିତ୍ ତଥା ମନସ୍ତତ୍ତ୍ୱବିତ୍ ଚନ୍ଦ୍ରଶେଖର ରଥଙ୍କର ୮୯ ବର୍ଷରେ ପରଲୋକ ।

୧୧ । ୨- ବିଶିଷ୍ଟ ଅଭିନେତ୍ରୀ, ନିର୍ଦ୍ଦେଶିକା ତଥା ପ୍ରଯୋଜିକା ପାର୍ବତୀ ଘୋଷଙ୍କର ୮୫ ବର୍ଷରେ ପରଲୋକ ।

୧୫ । ୨- ଓଡ଼ିଶା ଇତିହାସ ରଚନା କରି ଭାରତୀୟ ପୁରୁଷ ଓ ମହିଳା ହକିଦଳର ୫ ବର୍ଷ ପାଇଁ ପ୍ରାୟୋଜକ ଘୋଷିତ ।

## ଭାରତ ଖବର

୫ । ୨- ମାଲଦ୍ୱୀପରେ ରାଜନୈତିକ ସଙ୍କଟକୁ ନେଇ ୧୫ ଦିନ ପାଇଁ ଜରୁରୀ ପରସ୍ଥିତି ଘୋଷଣା ।

୨୫ । ୧- କର୍ଣ୍ଣିସେନାର ବିରୋଧ ଓ ବିକ୍ଷୋଭ ସତ୍ତ୍ୱେ 'ପଦ୍ମାବତ୍' ଚଳଚ୍ଚିତ୍ର ବିଭିନ୍ନ ପ୍ରେକ୍ଷାଳୟରେ ମୁକ୍ତିଲାଭ ।

୨୯ । ୧- ବିଜୁ ଜନତା ଦଳ (ବି.ଜେ.ଡି) ଲୋକସଭା ସଭ୍ୟ ଭର୍ତ୍ତୃହରି ମହତାବ ୨୦୧୭ ବର୍ଷ ପାଇଁ ସଂସଦର ଶ୍ରେଷ୍ଠ ସାଂସଦ ବିବେଚିତ ।

୩୦ । ୧- ଭାରତର ବୈଦେଶିକ ସଚିବ ଭାବେ ବିଶିଷ୍ଟ କୂଟନୀତିଜ୍ଞ ବିଜୟ କେଶବ ଗୋଖଲେଙ୍କର ଦାୟିତ୍ୱଗ୍ରହଣ ।

- ସୁପ୍ରିମ୍ କୋର୍ଟ ଓ ହାଇକୋର୍ଟ ବିଚାରପତିଙ୍କର ଦରମା ବୃଦ୍ଧି ସମ୍ପର୍କିତ ବିଧେୟକ ଅନୁମୋଦିତ ।

୧ ।୨- ଚାରି ବିଚାରପତିଙ୍କ ଅସନ୍ତୋଷ ପରିପ୍ରେକ୍ଷୀରେ କର୍ମପର୍ଯ୍ୟାୟ ତାଲିକା ଅନୁଯାୟୀ ସୁପ୍ରିମ୍ କୋର୍ଟରେ ଥିବା ମାମଲାଗୁଡ଼ିକୁ ଆବଣ୍ଟନ କରାଯାଇଛି । ଜନସ୍ୱାର୍ଥ ମାମଲା ପ୍ରଧାନ ବିଚାରପତିଙ୍କ ଦ୍ୱାରା ବିଚାର କରାଯିବ ଏବଂ ୫ ତାରିଖରୁ ନୂଆ ବ୍ୟବସ୍ଥା ଲାଗୁହେବ ।

୨।୨- ସାଧାରଣ ବଜେଟ୍ ଉପସ୍ଥାପିତ ହେବା ପରେ ପୁଞ୍ଜିବଜାର ଗୁରୁତର ପ୍ରଭାବିତ ।

୩ । ୨- ନ୍ୟୁଜିଲାଣ୍ଡଠାରେ ଖେଳାଯାଉଥିବା ୧୯ ବର୍ଷରୁ କମ୍ ବିଶ୍ୱକପ୍ କ୍ରିକେଟ୍ ପ୍ରତିଯୋଗିତାରେ ଅଷ୍ଟ୍ରେଲିଆକୁ ହରାଇ ଭାରତର ବିଶ୍ୱ ଚମ୍ପିଆନ୍ ଆଖ୍ୟା ହାସଲ ।

- ପଶ୍ଚିମ ଆଫ୍ରିକୀୟ ରାଷ୍ଟ୍ର ବେନିନ୍ ଉପକୂଳରେ ୨୨ଜଣ ଭାରତୀୟ ନାବିକ ଜାହାଜ ସହ ନିଖୋଜ ।

୯ । ୨-ପାକିସ୍ତାନ ଗୁଇନ୍ଦା ସଂସ୍ଥା ଇଣ୍ଟର ସର୍ଭିସ୍ ଇଣ୍ଟେଲିଜେନ୍ସ (ଆଇ.ଏସ୍.ଆଇ) ପାଇଁ ଗୁପ୍ତଚର ଗିରି କରୁଥିବା ଭାରତୀୟ ବାୟୁସେନାର ଗ୍ରୁପ୍ କ୍ୟାପ୍‌ଟେନ୍ ଅରୁଣ ମାରଓ୍ୱାହା ଗିରଫ ।

୧୦ । ୨- ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦିଙ୍କୁ ପାଲେଷ୍ଟାଇନ୍ ସରକାରଙ୍କ ତରଫରୁ 'ଗ୍ରାଣ୍ଡ୍ କଲାର୍ ଅଫ୍ ଦି ଷ୍ଟେଟ୍ ଅଫ୍ ପାଲେଷ୍ଟାଇନ୍' ପୁରସ୍କାର ପ୍ରଦାନ ।

*(ଅବଶିଷ୍ଟାଂଶ ୫୨ ପୃଷ୍ଠାରେ)*

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075, 2422597